# କବିତାଞ୍ଜଳି



ଶ୍ରୀମତୀ ଅପର୍ଣ୍ଣା ଦେବୀ

Digitized by srujanika@gmail.com

# କବିତାଞ୍ଜଳି

ଶ୍ରୀମତୀ ଅପର୍ଣ୍ଣା ଦେବୀ କର୍ତ୍ତୃକ

ପ୍ରଣୀତ

ଓ

ପ୍ରକାଶିତ ।

ପ୍ରଥମ ମୁଦ୍ରଣ

**Printed by V. Kar**

UTKAL SAHITYA PRESS

**CUTTACK**

**1931**

ମୂଲ୍ୟ ଟ ୦।/ ମାତ୍ର

Digitized by srujanika@gmail.com

# ଉତ୍ସର୍ଗପତ୍ର



ପରମପୂଜନୀୟା ଦୟାର୍ଦ୍ରହୃଦୟା ସ୍ୱଧର୍ମପରାୟଣା
ଆଶ୍ରିତବତ୍ସଳା ସର୍ବସନ୍ତାପସାନ୍ତ୍ୱନାଦାୟିନୀ ମାତୃ-
ସ୍ୱରୂପିଣୀ, ମତ୍‌ପିତୃକଳ୍ପ ରାୟ ସାହେବ ଶ୍ରୀଯୁକ୍ତ
ଆନନ୍ଦଚନ୍ଦ୍ର ପତି ମହୋଦୟଙ୍କ ସହଧର୍ମିଣୀ
ଶ୍ରୀମତୀ ସୂର୍ଯ୍ୟମଣି ଦେବୀ ମହୋଦୟା...
ଶ୍ରୀ କରକମଳେଷୁ

ଅୟି ଗୋ ସୁବ୍ରତେ ଗୃହର୍ଦ୍ୟଦେବତେ
ଦୀନ ଆଶ୍ରୟ ସଦନେ,
ସୁଗୁଣାଲଙ୍କୃତା ଗୃହିଣୀ ସୁମାତା
ସର୍ବସୌଭାଗ୍ୟଶୋଭନେ ।
ସନ୍ତାନର ସର୍ବ ସନ୍ତାପହାରିଣୀ
ଜନନୀ ବିନୁ ଏ ମନ,
ଶୋକ ଦୁଃଖତାପେ ହୋଇଥିବା ବେଳେ
ବିଷାଦ ତିମିରାଚ୍ଛନ୍ନ ।
ଲୁବ୍ଧ ହୃଦ ଆଶା ଉଜ୍ଜ୍ୱଳ ସହସା
ଭାଗ୍ୟ ଉଷାଲୋକପ୍ରଭା,
ଭେଟାଇ ଦେଲ ଗୋ ! ଭବାଦୃଶ ଧୀରା
ଗୁଣଜ୍ଞା ମହାନୁଭବା ।

Digitized by srujanika@gmail.com

ସର୍ବଥା ନାରୀର    ଆଦର୍ଶ ସୁନ୍ଦର
କର୍ତ୍ତବ୍ୟବ୍ରତଚାରିଣୀ,
ମଧୁର ପବନ    ବାତ୍ସଲ୍ୟପୂରିତ
ସୁଧାଧାର ସ୍ୱରୂପିଣୀ;
ଉଦାରହୃଦୟା    ଶଶ୍ୱରଣୀ ଦୟା,
ସ୍ୱଧରମପରାୟଣା,
ସୁକର୍ମକୁଶଳା    ଆଶ୍ରିତବତ୍ସଳା,
ସର୍ବଜୀତ ହିତଷଣା,
ଗୁରୁଜନଦେବତା,    ସାଧ୍ୱୀ ପତିବ୍ରତା
ସନ୍ତାଙ୍କୁ ଜନନୀରୂପେ—
ଲଭିଲ ଗୋ ବନ୍ଧୁ    ଅପାର କୃପାରୁ
ଜନ୍ମଜନ୍ମାର୍ଜ୍ଜିତ ତପେ ।
ଅଶ୍ରୁ ଅର୍ଘ୍ୟାଞ୍ଜଳି    ଅନୁକ୍ଷଣ ଢାଳି
ଝୁରୁଥିଲ ଯାହା ଧ୍ୟାୟି,
ମେଣ୍ଟିଲା ଗୋ, ସେହି    ପରାଣ ପିପାସା
ତବ ପଦାଶ୍ରୟ ପାଇ ।
ଛୁଟିଲା ଗୋ, ମାତୃ—    ବିୟୋଗଜନିତ
ଦାରୁଣ ମରମ ବ୍ୟଥା,
ଫୁଟିଲା ଗୋ, ମନ    ଆନନ୍ଦ ସୁମନ
ପ୍ରାଣେ ଲଭି ସାର୍ଥକତା,

Digitized by srujanika@gmail.com

ତେଣୁ କୃତଜ୍ଞତା          ପ୍ରଫୁଲ୍ଲ ହୃଦୟେ
ଭକ୍ତିବନମ୍ରଭାବରେ
ଥାଇ ଏତେ ଦୂରେ          କଳପନା ବଳେ
ଅରଶ ତବ ପଦ୍ମରେ
ଏ 'କବିତାଞ୍ଜଳି'          ଅରପଣ କଲି
କରପଲ୍ଲବେ ତନୟେ !
ଘେନନ୍ତୁ କନ୍ୟାର          ଭକ୍ତି ଉପହାର
ଅୟି ! ସଦୟହୃଦୟେ !

ଚରଣାଶ୍ରିତା କନ୍ୟା
ଅପର୍ଣ୍ଣା ।

# ଶୁଦ୍ଧିପତ୍ର



| ବିଷୟ | ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|---|
| ଉତ୍ସର୍ଗପତ୍ର | ୯ | ୧୫ | ପପାସା | ପିପାସା |
| ଶିଶୁ | ୨ | ୧୭ | କଜନ | କୂଜନ |
| ସକାଳ | ୪ | ୮ | ତେ ଠ ରେ | ତୋଠାରେ |
| " | " | ୧୦ | ବେଲା | ବୋଲା |
| " | ୫ | ୨ | କଜନେ | କୂଜନେ |
| ଗୃହମାସ୍ତ | ୭ | ୪ | ଅକ ଶ | ଆକାଶ |
| ଚୌକିଦାର | ୧୦ | ୧ | ଫଠାଇ | ଫିଠାଇ |
| ବ୍ୟାକୁଳବେଳା | ୧୨ | ୨ | ଲୁଣ୍ଡବକ | ଘୁଞ୍ଚବକ |
| " | ୧୩ | ୧୨ | ଉଠଲ | ଉଠିଲ |
| ନଜନସ୍ତ | ୧୫ | ୧୨ | ପାଲଟି | ପାଲଟି |
| " | " | ୧୫ | ନ ଚଇ | ନାଚଇ |
| ନୌକା ଚଳେ | ୧୮ | ୧୧ | ନାଜେ | ନାଦେ |
| " | " | ୧୫ | ଘ ଲେ | ଘାଲେ |
| " | ୧୯ | ୫ | ଏକ୍ତଧ ନେ | ଏକଧାନେ |
| ସନ୍ଧ୍ୟା | ୨୭ | ୮ | ଅନ୍ଧ ର | ଅନ୍ଧାର |
| " | " | ୯ | ସକଳ | ସକଳେ |
| " | " | ୧୭ | ତେ ଗ | ତୋଗ |
| ଜହ୍ନମାମୁ | ୨୯ | ୬ | ବଞ୍ଚଇ | ବଞ୍ଚୁଇ |

Digitized by srujanika@gmail.com

| ବିଷୟ | ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|---|
| ଗୁଣର ଆଦର | ୩୨ | ୧୧ | ରଜତର ତନୁ | ରଜତ ରତନୁ |
| ଶରତ୍ | ୪୪ | ୧ | ସଖି ଶରତ | ଶରତ ସଖି |
| ,, | ୪୪ | ୫ | ସ୍ତମିତ | ସ୍ତିମିତ |
| ,, | ,, | ୧୨ | ବାଜଣ | ବାଜଣା |
| ,, | ୪୫ | ୧ | ସ୍ନଗ୍ଧ | ସ୍ନିଗ୍ଧ |
| ,, | ,, | ୧୦ | ଶେ ଭା | ଶୋଭା |
| କାଦମ୍ବିନୀ | ୫୩ | ୧ | ଇନ୍ଦ | ଇନ୍ଦ୍ର |
| ସ୍ରୋତେ ସରୋଜ | ୫୭ | ୧୫ | ସୋତ | ସ୍ରୋତ |
| ,, | ୫୮ | ୧ | ଘ ଥ | ଘାଥ |
| ,, | ,, | ୮ | କ ଳଦୂତ | କାଳଦୂତ |
| ,, | ,, | ୨୦ | ଜୀବନ ବକଳେ | ଜୀବନବକଳେ |
| ପବନ | ୬୩ | ୧୮ | ଭମୁ | ଭ୍ରମୁ |
| ,, | ୬୪ | ୧୩ | ଝଙ୍କାରେ ଝଙ୍କାରେ | ଟଙ୍କାରେ ଝଙ୍କାରେ |
| ,, | ୬୫ | ୧୦ | ନବ ପୁ | ନବାପୁ |
| ,, | ,, | ୧୧ | ଶଳା | ଶିଳା |
| ଆକାଶ | ୬୬ | ୩ | ପରକ ଶ | ପରକାଶ |

Digitized by srujanika@gmail.com

# ମମତାଞ୍ଜଳି



## ଶିଶୁ



ଶିଶୁର ସୁନ୍ଦର ମୁଖ,
ଯେନ୍ତେ—ମନଭୁଲାଣିଆ ଗୋଲାପର ଦର-
ଫୁଟନ୍ତା କଢ଼ ଉନ୍ମୁଖ।
ଶିଶୁର ସୁନ୍ଦର ଆଖି,
ଯେନ୍ତେ—ଖେଳଇ ଭଅଁର ହ୍ରଦ-ସରସର
ପଦ୍ମଫୁଲ କୋଳେ ଲଗି।
ଶିଶୁର ସୁନ୍ଦର ହସ,
ଯେନ୍ତେ—ଶରତ କାଳର ଚନ୍ଦ୍ରମଣ୍ଡଳର
ସ୍ନିଗ୍ଧସ୍ୱଚ୍ଛ ଜ୍ୟୋସ୍ନାରସ।
ଶିଶୁର ସୁନ୍ଦର ଅଙ୍ଗ,
ଯେନ୍ତେ—ଉଇଁ ଆସୁଥିବା ବାଳ ଅରୁଣର
ନୂଆ ଢଳ ଢଳ ଢଙ୍ଗ।
ଶିଶୁର ସୁନ୍ଦର ଗାଲ,
ଯେନ୍ତେ—ଗୁଣ୍ଠୁଣୀ ହାତର ମନ ଗର୍ବଭର
ପାଚିଲା ଝୁଲବା ଫାଳ।

Digitized by srujanika@gmail.com

ଶିଶୁର ମୃଦୁ ମୃହାଣି,
ଯେମନ୍ତେ—ଉଜ୍ଜ୍ୱଳ ନିର୍ମଳ ଜ୍ୟୋତି ଢଳ ଢଳ
ତାରକାର ଦୀପ୍ତ ଠାଣି ।
ଶିଶୁର ସୁନ୍ଦର ଛଇ,
ଯେମନ୍ତେ—ଭଉଁରୀ ଖେଳରେ ଉନ୍ମତ୍ତ ଲୋଳ
ଲହରୀ ନାଚୁଥା ନଈ ।
ଶିଶୁର ସୁନ୍ଦର କାନ୍ଦ,
ଯେମନ୍ତେ—ବରଷା କାଳର ବିଲ ପାର ଦୂର
ବଇଁଶୀ ମଧୁର ନାଦ ।
ଶିଶୁର ସୁନ୍ଦର ଗୋଳ,
ଯେମନ୍ତେ— ଦୂର ପର୍ବତର ଝରଣା ଝର୍ଝର
ଝରର ବ୍ୟାକୁଳ ରୋଳ ।
ଶିଶୁର ସୁନ୍ଦର ଖେଳା,
ଯେମନ୍ତେ—ତରଙ୍ଗ-ଦୋଳାରେ ଦୋଳାୟିତ ଧୀରେ
ଫୁଲ-ବଲୟିତ ଭେଳା ।
ଶିଶୁର ଦରୋଟି କଥା,
ଯେମନ୍ତେ—ଚୈତ୍ର ବସନ୍ତର କୋକିଳକୂଜନ
କଣ୍ଠଜଡ଼ା ବ୍ୟାକୁଳତା ।
ଶିଶୁର ସରଳ ମତି,
ଯେମନ୍ତେ—ବିଶ୍ୱବନ୍ଧୁ ପଦ- ମକରନ୍ଦଲୁବ୍ଧ
ବିଶ୍ୱ ପ୍ରେମିକର ଗତି ।



Digitized by srujanika@gmail.com

# ସକାଳ



( ୧ )

"ସକାଳ ହେଲା ସକାଳ ହେଲା" କୁଆ ବୁଲିଲା କହି
ଉଠ ରେ ଉଠ ନ କର ମଠ ଦୁଆର ଫିଟା ଭାଇ ।
ଦେଖ ଭୋ'ରରୁ ଆମ ଅଗରୁ
ଉଠି ବୁଲଇ ବା' ଦୁଲୁସୁଲୁ,
ଆଲୋକ ଉଠି ହେଲାଣି ମାଟି ଜ୍ୟୋଛନ୍ତି ଛୁଟିକାଇ ।
"ସକାଳ ହେଲା ସକାଳ ହେଲା" କୁଆ ବୁଲିଲା କହି ॥

( ୨ )

କେହୁ ନ ଉଠୁଁ ଦ୍ୱାର ନ ଫିଟୁଁ ସବା ଆଗରୁଁ ଉଠି
ଫୁଲ୍ଲ ମୁକୁଳ ହୋଇ ଆକୁଳ ଦେଇ ପରାଗ ଲୁଟି,
ଗୁଣୁ ଗୁଣୁ ସ୍ୱରେ ସଙ୍ଗୀତ ଗାଇ
ମଧୁ ମନ୍ଥଣ ଆଣିବା ପାଇଁ
ଗଲାଣି କେତେ ବେଳରୁ ଧାଇଁ ମହୁମାଛି ବୋହୁଛି ।
କେହୁ ନ ଉଠୁଁ ଦ୍ୱାର ନ ଫିଟୁଁ ସବା ଆଗରୁଁ ଉଠି ॥

( ୩ )

ଦେ'ଖେ ଦେ'ଖେ ଖିଡ଼କି ଫାଙ୍କେ ଆଲୋକ ଡ଼ାକେ ତତେ
କହେ ଆଲୋକ ଦେଖ ରେ ଦେଖ ଚଞ୍ଚଳ ମୁଁ କେମନ୍ତେ

Digitized by srujanika@gmail.com

ଡାକେ କୋକିଳ ବକୁଳ ଶାଖେ
ଡିମିରି ଡାଳେ ଡାହୁକ ଡାକେ
କଜ୍ଜଳପାତି ହସି ଉଠନ୍ତି ଅପସନ୍ଦେ କି ସତେ ?
ଦେ’ଖେ ଦେ’ଖେ ଝିଙ୍କି ଫାଙ୍କେ ଆଲୋକ ଡାକେ ତତେ ।

( ୪ )

ଗଲା ଏଥର ରାତି ଅନ୍ଧାର-ବେଳା ଟେରାଟି ଫିଟି
ଆଲୋକ ଆସି ମୁରୁକି ହସି ଚାହୁଁଛି ମିଟି ମିଟି,
ଆସ ରେ ଯିବା ବୁଲି ଆସିବା,
ଫୁଲ ଟୋକାରେ ଭଇକୂଲେ ବା,
ଅଳସ ଯାଇ ଆସିବ ଭାଇ ! ଦେଖେ ପୂର୍ବ ଫୁଟିଛି ।
ଗଲା ଏଥର ରାତି ଅନ୍ଧାର ବେଳା ଟେରାଟି ଫିଟି ॥

( ୫ )

କଲକଲିଆ ଝୋ’ର ହାଉଆ ଖେଳଇ ବୁଲି ବୁଲି,
ଫୁଲ ସୁନ୍ଦରୀ ଥି’ର ଥି’ର ନାଚଇ ଝୁଲି ଝୁଲି;
ଘାସରୁ ଘାସେ ଝିଣ୍ଟିକା ବସେ,
ଫୁଲରୁ ଝଡ଼ି କେଶର ଖସେ,
ପାରି ଦେଲାଣି ପୂର୍ବ ଆକାଶେ ଉଷା ଜାଲିଆ ଝୁଲି,
କଲକଲିଆ ଝୋ’ର ହାଉଆ ଖେଳଇ ବୁଲି ବୁଲି ।

( ୬ )

ଅନ୍ଧାର ଶାଢ଼ୀ ସର୍ବାଙ୍ଗୁ କାଢ଼ି ପ୍ରକୃତିରାଣୀ ହର୍ଷେ,
ଉଜ୍ଜ୍ୱଳ ବାସ ପିନ୍ଧି ବିକାଶ କୁସୁମ ହାସ ହସେ;

Digitized by srujanika@gmail.com

ବିହଗକୁଳ ବିଶ୍ୱ ପ୍ରାଙ୍ଗଣେ
ମିଳି ଏକାସ କଲି କଜନେ
ଗାଆନ୍ତ ଉଷା ବନ୍ଦନା ଗୀତ ଭାସି ଆନନ୍ଦ ରସେ ।
ଅନ୍ଧାର ଶାଢ଼ୀ ସର୍ବାଙ୍ଗୁ କାଢ଼ି ପ୍ରକୃତିରାଣୀ ହର୍ଷେ ।

( ୭ )

ପୂରୁବ ଦିଗେ ସୂର୍ଯ୍ୟ ସରାଗେ ଉଇଁ ମୁଖଟି ଟେକି
ଝାକଝମକ ରଙ୍ଗ ଆଲୋକ ସୃଷ୍ଟି ଗୋଟାକ ଦେଖି
ଚକଚକିଆ କିରଣ କରେ
ସୁନା ଲହରୀ ନଈଏ ଜଳେ
ଥୋପି ପଡ଼ଇ ମାଣିକ ତହିଁ ରଙ୍ଗବିମ୍ବଟି ଦେଖି ?
ପୂରୁବ ଦିଗେ ସୂର୍ଯ୍ୟ ସରାଗେ ଉଇଁ ମୁଖଟି ଟେକି ॥

( ୮ )

'ଉଠ ରେ ଉଠ ନ କର ମଠ ଦୁଆର ଫିଟା' ଭାଇ !
ଡାକେ ଭଅଁର ପଦ୍ମ ଦୁଆରେ ଉଷା-ବନ୍ଦନା ଗାଇ,
ନିଦ ତିଆଗି ସାରା ଭୁବନ
କରନ୍ତି ଉଷା ପଦ ବନ୍ଦନ
ଆସ ବେଗେ ରେ ଉଷା ପାଖରେ ଆମେ ବନ୍ଦିବା ଯାଇ
ଉଠ ରେ ଉଠ ନ କର ମଠ ଦୁଆର ଫିଟା ଭାଇ !



Digitized by srujanika@gmail.com

# ଚାନ୍ଦନୀ ରାତି



କି ଶୋଭା ଚାନ୍ଦନୀ ରାତି,
କି ଶୋଭା ଚନ୍ଦ୍ରର କାନ୍ତି,
ଚଳ ଚଳ ଚାନ୍ଦନୀରେ
                    ଜଳ ଆକାଶ ପୃଥ୍ୱୀ
ତରୁ ଲତା ଫୁଲ ଫଳ
ଚାନ୍ଦନୀରେ ଚଳଚଳ,
ଚନ୍ଦ୍ର ଉଦଥ ଶାଢ଼ୀ କି
                    ପିନ୍ଧିଥିଛି ପ୍ରକୃତି ?
ଫୁଲୁଁ ପରାଗ ଛଡ଼ାଇ
ବୁଲେ ଚୌଦିଗେ ଉଡ଼ାଇ
କଲକଲିଥ ବତାସ
                    ଝଲମଲ ଜ୍ୟୋସ୍ନାରେ,
ଜ୍ୟୋତ୍ସ୍ନାରେ ଚକଚକ
ଦିଶେ ଆକାଶ ଗୋଟିକ,
ଉଜ୍ଜ୍ୱଳ ଜ୍ୟୋତ୍ସ୍ନା ତେଜ
                    ଖେଳେ ସାଗର ଫସାରେ
ଚଳଚଳ ଜ୍ୟୋସ୍ନାକାଶେ
ମାଲମାଲ ମେଘ ଭାସେ,

Digitized by srujanika@gmail.com

ଟୁକୁ ଟୁକୁ ଜହ୍ନମାମୁ
ଟଳଟଳ ଜ୍ୟୋତ୍ସ୍ନା,
ମୁକ୍ତା ପରି ଜକ ଜକ
ଦଶନ୍ତ ତାରଗୁଡ଼ିକ,
ପଡ଼ିଛୁ କି ଚାନ୍ଦମାମୁ
ଛୁଟ ଗଦ ଦକ୍ଷଣା ?

ଝକମକଆ ପଥର
ପଶିଏ ଥରକୁ ଥର
ଜକଜକ ଜଳି ନଭେ
ଜୁଳୁଜୁଳା ଜ୍ୟୋତଟି,
ଚକୋର ଚଢ଼େଇ ଡାଳେ
ଚାନ୍ଦ ଦେଖି ମୋଦେ ଢାଳେ
ବ୍ୟଥାହର ପ୍ରାଣଭର
ମହାମନ୍ତ୍ର-ଗୀତଟି ।

ନୀଳ ଟୁକୁଟୁକୁ ଜଳ
ଜ୍ୟୋତ୍ସ୍ନାରେ ଢଳଢଳ,
ଦଳ ବାନ୍ଧି ମାଳ ମାଳ
ମାଛକୁଳ ଭାସନ୍ତ;
ଧଳା ଜ୍ୟୋତ୍ସ୍ନା ଦେହେ ଝଳି
ଦର୍ପଣପାତଆ ଭଳି
ଝଟକି, ଛଟକେ ଜଳେ
ଜକଜକ ଦଶନ୍ତ ।

Digitized by srujanika@gmail.com

ନଦୀର ଲହରୀମାନେ
ଜ୍ୟୋତ୍ସ୍ନାରେ ତାଳେ ତାଳେ
ଗୋଟିକ କୋଟିଏ ରୂପେ
ଚନ୍ଦ୍ର ନାଚ ଖେଳଇ,
ମୁକ୍ତା ମାଳା ପରି ଜଡ଼ି
ତାରାବିମ୍ବ ଧାଡ଼ି ଧାଡ଼ି
ହୀରା ପଦକ ପରାଏ
ଝଟ ଝଟ ଝଲଇ ।
ଚନ୍ଦମାମୁ ସୁଅଗିଣୀ
ଫୁଲସଖୀ କୁମୁଦିନୀ
ପାଖୁଡ଼ା ପକ୍ଷ୍ମଳମାଳା
ଟୋକି ଟୋକି ଫିଟାଇ,
ଏକା ଲକ୍ଷ୍ୟେ ଚନ୍ଦ୍ରେ ଚାହିଁ
ପବନେ ବାଟେ ଗେହ୍ଲାଇ
ମହମହ ବାସନାରେ
ମନ୍ଦ ସାର ଫଟାଇ ।
ନେତ୍ର-ପ୍ରୀତିପ୍ରଦ ଚାନ୍ଦ
ଉଜ୍ଜ୍ୱଳ ନିର୍ମଳ ଚନ୍ଦ—
ତେଜେ ବିଶ୍ୱସାରା ଦିଶେ
କି ଉଜ୍ଜ୍ୱଳ ନିର୍ମଳ,
ପଣ୍ଡିତ ସୁଗୁଣବନ୍ତ
ବିବେକୀ କର୍ତ୍ତବ୍ୟରତ

Digitized by srujanika@gmail.com

ସୁପୁଦ ଗୋଟିକେ ଯଥା
ସାରା ବଂଶ ଉଜ୍ଜ୍ୱଳ ।
ଆସ, ଭାଇ, ଆସ ଯିବା,
ଫୁଲ ତୋଠାରେ ବୁଲବା,
ଗୁନ୍ଦମୀ ଉପରେ ବସି ।
ଗୁହୁଁ ଗୁନ୍ଦମାମୁକୁ ।
ଗାଇବା ମହିମା ସ୍ତବ,
ଯାହା ଲାଗି ଏ ବିଭବ
ସୁମର ହୃଦୟେ ସେହି
ଦୟାମୟ ପ୍ରଭୁଙ୍କୁ ।



Digitized by srujanika@gmail.com

# ଚୌକିଦାର

( ଅନୂଦିତ )

ଅପରାଜିତା ଫୁଟାଇ ପତା
ବୋଲେ ଭଅଁରକୁ ଗୁହ୍ନି,
ଚକ୍କଣ କଳା କଜ୍ଜ୍ୱଳ-ବୋଳା
କଏ ତୁ କାଳିଆ ଭାଇ !

ଭଅଁଭଁ ହୋଇ ପକ୍ଷ ହଲାଇ
ବୋଇଲା କଳା ଭଅଁର—
"ଫୁଲ୍ ସର୍ଦ୍ଦାର କଳା ଭଅଁର
ନାଅଁଟି ଅଟେ ଆମର ।"

ଶୁଣି ତା କଥା ଅପରାଜିତା
କହେ ହୋଇ ଆଗଭର,
"ଗାୟକ ତୁ କି ? ଗାଅ ତ ଦେଖି
ତୋ ଗଳା ବଡ଼ ସୁନ୍ଦର ।"

ଭଅଁର କହେ ଗାୟକ ନୁହେଁ
ଗଳା ସ୍ୱଭାବ-ସୁନ୍ଦର,

Digitized by srujanika@gmail.com

ଗାଇବ କସ ଦେ' ଟିକସ
ଆମେ ଚଉକିଦାର ।
ବୋତାମ ଗୁନ୍ଥା କଳା କୁରୁତା
କଳା ପଗଡ଼ି ଆମର
ମହଣ ମହୁ ଟିକସ ନଉଁ
ଖାସ୍ ନବାବ ସ୍ୱକଣ୍ଠୀ ।"

Digitized by srujanika@gmail.com

# ବ୍ୟାକୁଳବେଳା



ପାହାନ୍ତ ପହର ପାତଳ ଅନ୍ଧାର
ବୋଲଇ "ଏଥର ଲୁଚିବ କି ?"
ବିକଟାଳ ସ୍ୱରେ ପେଚ୍ର ବୋଲେ ଡରେ
"କୋରଡ଼ କୋଡ଼ରେ ଲୁଚିବ କି ?"

ନିଶାଚର ଜନ୍ତୁ ପାଇ ଭୟ ହେତୁ
ଝଗ୍ରନ୍ତି "ଦିବା ପଳାଇ କି ?"
ଜୁଳୁଜୁଳା ପୋକେ ବୋଲନ୍ତି ଆତଙ୍କେ
"ଦିବା ଶେଷ ଜ୍ୟୋତି ଜଳାଇ କି ?"

ଲୁଚି କୋରଡ଼ରେ ଓଧୁଅ ବଗ୍ରେ
"ମୁଁ ଆଉ କାହାକୁ ଦିଶୁଛି କି ?"
ଅତଙ୍କ ମନରେ ଶ୍ରେବ ବୋଲେ ଡରେ
"କଏ କେଉଁଆଡ଼ୁ ଆସୁଛି କି ?"

ସୁକଅଁଳ-କଣ୍ଠୀ କୋଇଲି ବୋଲଇ
"ଏଥର ସଙ୍ଗୀତ ଗାଇବ କି ?"
ବୋଲେ ଠେଙ୍ଗା କୁଆ "କରି କାଥ କାଥ
ଘରେ ଘରେ ବୁଲି ଖାଇବ କି ?"

Digitized by srujanika@gmail.com

ଦୁକୁ ଦୁକୁ ନଦ                    ବୋଲେ "କି ପ୍ରମାଦ !
ଏଥର ଲୋକଙ୍କୁ ଗୁଡ଼ିବ କି ?"
ବୋଲଇ ଆଲୋକ                    "କରି ଝକ ଝକ
ଜଗତଟାଯାକ ଜଡ଼ିବ କି ?"

ହୋଇଣ ଉସତ                    ଭ୍ରମ ସନ୍ତ ସନ୍ତ
ପଦ୍ମଫୁଲ ବୋଲେ "ଫୁଟିବ କି ?"
ମେଘ ତଳେ ଥାଇ                    ସୂର୍ଯ୍ୟ ଯେ କହଇ
"ମେଘ ଠେଲିଦେଇ ଉଠିବ କି ?"

କୋକିଲ ଗାଇଲା                    କୁଆ ବୋବାଇଲା
ଆଲୋକ ଜୁଆର ଛୁଟିଲା ରେ,
ଘଡ଼ଡ଼ି ଅନ୍ଧାରେ                    ମହାଯାତ୍ରକରେ
ମେଘ ଠେଲି ସୂର୍ଯ୍ୟ ଉଠିଲା ରେ ।



Digitized by srujanika@gmail.com

## ନିର୍ଜନ ରାତି



ନିର୍ଜନ ରାତି
ଶାନ୍ତ ପ୍ରକୃତି
କଳା ଧରଣୀ ଛବି ରେ,
ଦୂର ଆକାଶେ
ପଶ୍ଚିମ ପାଶେ
ଶୁକ୍ର ଗଲାଣି ଡୁବି ରେ ।
ଝିଁ ଝିଁ ଝିଁ ସ୍ୱରେ
ଗାଏ ଉଚ୍ଚରେ
ଝିଣ୍ଟିକା ଝିଁ ଝିଁ ଗୀତରେ,
ଚନ୍ଦ୍ର ନ ଦେଖି
ଚକୋର ପକ୍ଷୀ
ଝୁରଇ ଡାକି କାତରେ ।
ଖଦ୍ୟୋତପନ୍ତି
ଦୀପ ଜାଳନ୍ତି
ନାଚଇ ଥର (କୁ) ଥର ରେ,
କାଳ ପେଚକ
ବିକଟ ଡାକ
ଶୁଣି ମାଡ଼ଇ ଡରରେ ।

Digitized by srujanika@gmail.com

ବାଡ଼ପଦାଡ଼େ
କାହ୍ନିଁକ ଗୁଡ଼େ
କୁତା ଭୌଁ ଭୌଁ ରଢ଼ ରେ,
ଚୋରକୁ ଦେଖି
କୁତା ଭୁକେ କି
ଦେବାପାଇଁକି ତାଡ଼ ରେ ?
ଏତେ ରାତିରେ
ମାଆ କତରେ
ଉଠି ଶୋଇଲା ପିଲାଟି,
କାନ୍ଦଣା ସ୍ୱରେ
ଗହଳ କରେ
ନଣା ନଜନ ପାଲଟି !
କୌତୁକେ ବୁଲି
ବା’ କଲି କଲି
ନ ଚଇ ଗୃହ ଅଡ଼ରେ,
ଶୁଭେ କଠ କଠ
ଶାଢ ବକଠ
କଣ୍ଟା ବାଉଁଶ ଝାଡ଼ ରେ ।
ଅନ୍ଧାର ଅସୁଁ
ଅନ୍ଧାର ରାସୁଁ
ଟଁ ଟଁ ଟଁ ସ୍ୱରେ ବୋବାଇ,

Digitized by srujanika@gmail.com

ଚେମଣା ପଲେ
ବର ଗଛରେ
ମାତନ୍ତି ଡେରା ପକାଇ ।
ବାଦୁଡ଼ିମାନେ
ଆନନ୍ଦ ମନେ
ଖାଇ ପାଚିଲା ଫଳରେ,
ଥରକୁ ଥର
ସେ ପରସ୍ପର
କରନ୍ତି ଭୁଚ୍ଛା ଗୋଳ ରେ ।
ରାତି ନଜନ
ବୁଡ଼ନ୍ତେ ଜହ୍ନ
ଝଟକେ ତାରା ରୁପ ରେ ।
କି ଅବା ଜଳେ
ଆକାଶ ତଳେ
ଧାଡ଼ିକ ଧାଡ଼ି ଦୀପରେ ।
ଗାଁଆ ମୁଣ୍ଡରେ
ଘଡ଼ିକେ ଥରେ
ଗାଁଆ ଚଉକିଦାର ହୋ ।
ବଡ଼ ପାଟିରେ
ଡାକଇ ଜୋରେ
"ହୁସିୟାର ହୁସି-ଆର ହୋ ।"

Digitized by srujanika@gmail.com

ଜଙ୍ଗଲ ତଡ଼େ
ଡାକ ଯା' ଗୁଡ଼େ
ଚଲୁଥି "ହୁକ୍କା ହୁକ୍କା ହୋ"
କହେ "ସମସ୍ତେ
ବୋକା ଜଗତେ
ହୁକ୍କା ରଜା ମୁଁ ଏକା ହୋ ।





Digitized by srujanika@gmail.com

# ନୌକା ଚଢ଼ିଲେ



ଶୀରବ ସଙ୍ଗେ ନୌକା ଚଲେ
ନଦୀ ମଧ୍ୟେ ଅଥୟ ଜଳେ । ଘୋଷା—
ନାଉରୀ ଭାଇ ଅଣ୍ଟାଳ କର
ଲାଗିଛୁ ପାଣି କାଟିବାରେ
ଠିଆ ହୋଇ ନା' ମଙ୍ଗସ୍ଥଳେ ।
ହରିଣ୍ତ୍ରୀ ମେଲା ମୌଜମାନେ
ଯା'ନ୍ତି ହର- ଚଣ୍ତ୍ରୀ ଦର୍ଶନେ
ନାଆରେ ବସି କୁତୂହଳେ ।
ମେଲା ମଉଜ ଭାଇମାନେ
ଗାଆନ୍ତି ଗୀତ ଏକତାନେ
ସଙ୍ଗୀତ ନାଦେ ନା' ଉଛୁଳେ ।
ନାଚେ ଢେଉ ଉଠି ବତାସେ
'କବର କବର୍' ଶବ୍ଦ ଆସେ
ଗାଏ କି ଗୀତ ଜଳକଲେ ?
ବାଆ ବାଜନ୍ତେ ନାଆ ପା'ଲେ
ଡଗ ଡଗରେ ନାଆ ଗ୍ଲେ
ପଛେ ପକାଇ କୂଳଥଳେ ।
ପଶ୍ଚିମେ ବୁଡ଼ିବ ଯିବାପାଇଁ
ଢଗମଣ୍ତଳ ଝଲସାଇ
ସୂର୍ଯ୍ୟକି ଡଳ ଡଳ ଡଳେ ।

Digitized by srujanika@gmail.com

ପଲ୍ଲୀବଧୂଟି ତରତରେ
କଳସକାଖେ ଯାଏ ଘରେ
ଆର୍ଦ୍ର ବାସରେ ଦେହ ଝଲେ ।
ଧୀର ଧାର୍ମିକ ଲୋକମାନେ
ଘାଟରେ ବସି ଏକଧ୍ୟାନେ
ସନ୍ଧ୍ୟା ବନ୍ଦନ୍ତି ନଦୀଜଳେ ?
କାହିଁ ବା ଉଇଁ ନୀଳାକାଶେ
ତାରକାଟିଏ ମୋଦେ ହସେ
ମୁଖ ଦେଖେ କି ନଦୀଜଳେ ?
ସାରା ଆକାଶ ରଙ୍ଗାମୟ
ଧୂସର ଦୂର ଦ୍ରୁମଚୟ
ଯାଆନ୍ତେ ସୂର୍ଯ୍ୟ ଅସ୍ତାଚଳେ ।
ସମୀର ସଞ୍ଚେ— କୁଞ୍ଜେ କୋଳେ
ନୀରବେ ନୀଳ— ଢେଉ କୋଳେ
ନଉକା ଚଲେ ନଦୀଜଳେ ।
ଗୃହଆଡ଼ଟି ନଗ୍ଣଟିଥ
ମନ ଆନନ୍ଦେ ନାଉରିଆ
ଗାଏ ସଙ୍ଗୀତ କୁତୂହଳେ ।



Digitized by srujanika@gmail.com

## ଝୁଲୁଝୁଲୁ ବାଆ ।



ଝୁଲୁଝୁଲିଆ ଶୀତଳ ବାଆ
କଲ୍ କଲ୍ ହୋଇ ଆ'ରେ
ଥି'ର ଥି'ର ଚକାଭଉଁରୀ
ଖେଳି ଖେଳି ବୁଲୁଥା'ରେ ।

(ଘୋଷା)

ଉତ୍ଫୁଲ୍ଲେ ଫୁଲି ଧୀର ଲହରୀ
କୁହୁ କୁହୁ ଗୀତ ଗା'ରେ,
ଧାଇଁ ଏ କୂଳେ ସେ କୂଳେ ବେଳେ
ମୁଣ୍ଡ ପିଟି ଦେଉଥା'ରେ ।
ଡଗଡ଼ଗରେ ଯାଉ ବେଗରେ
ଅନୁକୂଳ ହାଉଆରେ
ଭାଙ୍ଗି ଢେଉକୁ ଫୁଲାଇ ବୁକୁ
ନାଚ ଉଠୁଥାଉ ନା'ରେ ।
ଟୁଲ୍ ଟୁଲ୍ ଢେଉ ଟଳ୍ ଟଳ୍ ଦେହୁଁ
ଝରୁଛି ଫେନ ମୁକ୍ତା ରେ
ନାଚନ୍ତୁ ମିଞ୍ଜି ପୁଞ୍ଜିକ ପୁଞ୍ଜି
ତଳ ତଳ ଜଳଧାରେ ।

Digitized by srujanika@gmail.com

ଆନନ୍ଦେ ଝୁଲୁ କର ଝୁଲ୍ ଝୁଲ୍
ଝୁଲାଇ ପେଣ୍ଡା ପେଣ୍ଡା ରେ
ଫୁଲ ମୁକୁଳ ଡାଳ ପତର
ସଜ୍ଜିତ ଗଛ ଲତାରେ ।
ଶୁଖିଲା ପତ୍ର ତୃଣ ସଜ୍ଜିତ
ବାଇ ମର୍ମର ବାଜାରେ,
ମଜାଇ ମନେ ବେଗେ ଗଗନେ
ଫର୍ ଫର୍ ଉଡ଼ି ଯା'ରେ ।
ସବୁଜ ଡାଳେ ପତ୍ର ଉଡ଼ାଳେ
ଦୋଳି ଲେନ୍ତାକୁ ଲେଣ୍ଟା ରେ
କୋଳି ଗଛରୁ ଦୁ'ଲୁ ଦୁ'ଲୁ
ଝଡ଼ି ତଳେ ପଡ଼ୁଥା'ରେ ।
ଫୁଲକେଶର ଧୂଳି ଅମ୍ବର
ଉଡ଼ାଇ ଆଣି ମଜାରେ,
ସୁବାସେ ମନ ମୋହି ପବନ
ଆନନ୍ଦଜଳେ ମଜ୍ଜା ରେ ।
ଝାଉବନସ୍ତେ ବଜାଇ ପ୍ରସ୍ତେ
ଝୁମୁକା ବାଜା, ବାଆ ରେ !
ବାଉଁଶ ବଣେ କିଠ୍ କିଠ୍ ତାନେ
ତୋ ଗୀତ ଲୁ ଗାଉଥା' ରେ ।



## ତାରା



( ୧ )

ଢଳ ଢଳ ମୁଖୀ ତାରା ଗୋ ।
ତୁମେ ଅଛ କି ଗୋ ବିଶ୍ୱଜନ ମନ-
ଆହ୍ଲାଦଦାୟିନୀ କାରା ଗୋ ?

( ୨ )

ଉଜ୍ଜ୍ୱଳଅଙ୍ଗିନୀ ତାରା ଗୋ,
ତୁମେ ଅଛ କି ଗୋ ସରଗ ଝିଲ୍ଲଣ—
ମୁକୁତା ଝାଲର ଝରା ଗୋ ?

( ୩ )

ସରଗସୁନ୍ଦରୀ ତାରା ଗୋ,
ତୁମେ ଅଛ କି ଗୋ ଅନନ୍ତ ଆକାଶ
ବକ୍ଷ-ବୈଜୟନ୍ତୀ-ହାର ଗୋ ?

( ୪ )

ନିର୍ମଳନୟନା ତାରା ଗୋ,
ତୁମେ ଅଛ କି ଗୋ ସୁରବାଳାଙ୍କର
ସନ୍ଧ୍ୟାବନ୍ଦା ଦୀପମାଳା ଗୋ ?

Digitized by srujanika@gmail.com

( ୫ )

ଟୁଲୁଟୁଲୁହସୀ ତାରା ଗୋ,
ତୁମେ ଅଟ କି ଗୋ ସୁରଗଙ୍ଗାର
ଲହରୀ-ଶୀକର-ହୀରା ଗୋ ?

( ୬ )

ଝଟ ଝଟ ଗୋରୀ ତାରା ଗୋ,
ତୁମେ ଅଟ କି ଗୋ ରଜନୀରାଣୀର
ରତନ ଅଲକା ତୋରା ଗୋ ?

( ୭ )

ଆକାଶଶୋଭନା ତାରା ଗୋ,
ତୁମେ ଅଟ କି ଗୋ ଜ୍ୟୋତିର୍ଲୋକ ପଥ
ଜ୍ୟୋତିର୍ନିଷ୍ୟନ୍ଦିନୀ ଧାରା ଗୋ ?

( ୮ )

ରଜନୀ ସଜନ ତାରା ଗୋ;
ତୁମେ ଅଟ କି ଗୋ ଶୋଭାରାଣୀଙ୍କର
ନିସର୍ଗ ଶୋଭାପସରା ଗୋ ?

( ୯ )

ଚନ୍ଦ୍ରମାବଲ୍ଲଭୀ ତାରା ଗୋ,
ତୁମେ ଅଟ କି ଗୋ ନନ୍ଦନ କାନନ
ପାରିଜାତ-ବୃନ୍ତଝରା ଗୋ ?

Digitized by srujanika@gmail.com

( ୧୦ )

ଅକଳଙ୍କ ଜ୍ୟୋତି ତାର୍ ଗୋ,
ତୁମେ ଅନମ୍ବର- ରୂପୀ ବଣ୍ଣମ୍ବର
ନୟନନନ୍ଦକର ପର୍ ଗୋ ?



Digitized by srujanika@gmail.com

# ସନ୍ଧ୍ୟା



(୧)

ଦିନ ବଡ଼ାଇ ଦେଇ ଛଡ଼ାଇ ସନ୍ଧ୍ୟା ଅଇଲା ରେ
ଫୁଲୁଫୁଲିଆ ଶୀତଳ ବାଆ ଧୀରେ ବହିଲା ରେ
ସୂର୍ଯ୍ୟ ପଶ୍ଚିମ ଦିଗ ଗୋଠାକ
ବୋଳି ଗୋଲାପି ରଙ୍ଗ ଆଲୋକ
କେଉଁ ଅଜଣା ଅନ୍ଧରେ ଯାଇ ଲୁଚି ରହିଲା ରେ ।

(୨)

ଗଉଡ଼ମାନେ ଆନନ୍ଦମନେ ଗୋଠ ଅଡ଼ାଇ ରେ
ବାହୁଡ଼ୁଛନ୍ତି ପବକାହାଳୀ ବଂଶୀ ବଜାଇ ରେ
ଗୋଠ ଫେରନ୍ତା ଗୋରୁ ବାଛୁରୀ
ଆସନ୍ତି ଦାଣ୍ଡେ ଉଡ଼ାଇ ଧୂଳି,
ହମ୍ବା ଛାଡ଼ିଲ କି ସନ୍ଧ୍ୟା ବିଜୟବାର୍ତ୍ତା ଜଣାଇ ରେ ?

(୩)

ବେଳ ବୁଡ଼ନ୍ତେ କେତେ ଉଷତେ ପକ୍ଷୀସକଳ ରେ
ଚରା ବୁଲାଦ ସବୁ ତିଆଗି ହୋଇ ଚଞ୍ଚଳ ରେ
ଆସନ୍ତି ବସାମୁଖେ ଧାଇଁ
ସନ୍ଧ୍ୟା ବନ୍ଦନା ସଙ୍ଗୀତ ଗାଇ
ଗାଡ଼ୀବେଳା ହେଲା ଯାତ୍ରୀ ପର କର ଚହଲ ରେ ।

(୪)

ବିଲ ବାହୁଡ଼ାଣି ଗୃହୀ ଧାଇ ଘରକୁ ଆସେ ରେ
ସାରା ଦିବସ ଶ୍ରମେ ବିଶ୍ରାମ ନେବା ସକାଶେ ରେ

Digitized by srujanika@gmail.com

କୁଟୁମ୍ବ ସରଳ ସ୍ନେହ ଭକତି
ଦେଖି ଅନ୍ତରେ ଲଭି ତୃପତି
ଶ୍ରମ ଦୁଃଖକୁ ଫିଙ୍ଗି ପଛକୁ ଉଲ୍ଲାସେ ଭାସେ ରେ ।

( ୫ )

ସନ୍ଧ୍ୟା ରାଣୀକି ଆକାଶ ମାଟି ରଞ୍ଜି ଦେଲାଣି ରେ
ପକାଇ ଫିକା ଫଗୁ ପିଚକା ନାଲିଆ ପାଣି ରେ
ଦିଗଦିଗନ୍ତେ ପୃଥ୍ୱୀ ତଳେ
ପର୍ବତ ଖୋଲେ ଦୂର ଜଙ୍ଗଲେ
କଜ୍ଜ୍ୱଳବୋଳା ଅନ୍ଧାର କଳା-ପରଦା ଟାଣି ରେ

( ୬ )

ଗୋଟିକି ଗୋଟି ଆକାଶେ ଫୁଟି ତାରା ସକଳ ରେ
ମୁଖ ଦେଖନ୍ତି କୁତୂହଳେ କି ନିର୍ମଳ ଜଳେ ରେ ?
ଦିଶେ ଆକାଶ ମୁକୁତାଭରା
ଅନନ୍ତ ମହା - ସାଗର ପରା
ଅବା ସରଗ-ସୁନ୍ଦରୀ ସଞ୍ଜ-ବଇଠା ଛଳେ ରେ ।

( ୭ )

ସନ୍ଧ୍ୟା ଆଳତି-ଘଣ୍ଟା ମନ୍ଦିରେ ମନ୍ଦେ ବାଜିଲାଣି
ଉଜ୍ଜ୍ୱଳ ଘର-ଦୁଆର ସଞ୍ଜ-ବତୀ ରାଜିଲାଣି
ସନ୍ଧ୍ୟା ସୌନ୍ଦର୍ଯ୍ୟେ ଆକାଶ ତେଜ ରା
ସନ୍ଧ୍ୟାସମ୍ଭାରେ ସଂସାର ଭରା
ଜୟ ମା ସନ୍ଧ୍ୟା ଜଗତ ବନ୍ଦ୍ୟା ଜୟ ସନ୍ଧ୍ୟାରାଣୀ ।



Digitized by srujanika@gmail.com

# ଜହ୍ନ ମାମୁଁ



(୧)

ଜହ୍ନମାମୁଁ ମୋର ବଡ଼ ସୁନ୍ଦର,
ଆକାଶ ଭ୍ରମାନେ ଯେବେ ତାରାଗଣେ
କରୁଥାଏ ନୂଆ ନୂଆ ହୁନ୍ଦର ।

(୨)

ଜହ୍ନମାମୁଁ ମୋର ଆକାଶ ରଜା,
ଚନ୍ଦ୍ରିକା ତାହାର କ୍ଷୀରଛ ସମ୍ଭାର
ତାରା ସୁନ୍ଦରୀଏ ପରା ପରଜା ।

(୩)

ଜହ୍ନମାମୁଁ ମୋର ଫୁଲ୍‌ ରସିକ,
ସାରା ଆକାଶଟା ତାର ଫୁଲ ତୋଟା
ଫୁଟିଥିଲା ଫୁଲ ତାରାଗୁଡ଼ିକ ।

(୪)

ଜହ୍ନମାମୁଁ ମୋର ସରଗ ଶିଶୁ,
ଅଟେ ତାର ସିନା ସମ୍ପଦ-ଜ୍ୟୋତ୍ସ୍ନା
ଝଡ଼ି ପଡ଼ୁଥାଏ ଥି'ର ଥି'ର ।

Digitized by srujanika@gmail.com

( ୫ )

ଜହ୍ନମାମୁଁ ମୋର ବଡ଼ ମଉଜ,
ଚନ୍ଦ୍ରମଣ୍ଡଳରେ ବସି ଦୋଳ ଖେଳେ
ଆକାଶ ତକଅଟିକ ଅଉଜ ।

( ୬ )

ଜହ୍ନମାମୁଁ ମୋର ଉଜ୍ଜ୍ୱଳ ଗୋରା,
ଗୋରାରୂପେ ତାର କର ଚମତ୍କାର
ଆକାଶ ପୃଥିବୀ ଦଶଇ ତୋରା ।

( ୭ )

ଜହ୍ନମାମୁଁ ମୋର ବଡ଼ ସେରେଣ୍ଡା,
ଖେଳୁଥାଏ ଖେଳ ଖେଳଣା ବାଦଲ
ଥୋଇ ଆକାଶରେ ଲେଣ୍ଡାକୁ ଲେଣ୍ଡା ।

( ୮ )

ଜହ୍ନମାମୁଁ ମୋର ବଡ଼ ରଙ୍ଗିଆ,
କୃଷ୍ଣ ଶୁକ୍ଳପକ୍ଷେ ଭଲକେ ଭଲକେ
ଛଇ ପରକଟି ହୁଅଇ ଠିଆ ।

( ୯ )

ଜହ୍ନମାମୁଁ ମୋର ବଡ଼ ଖେଳାଳୀ,
ଲୁଣ କଳାମେଘେ ଦଶିଯାଇ ବେଗେ
କେତେରଙ୍ଗେ ଖେଳେ ସେ ଲୁଚକାଳି ।

Digitized by srujanika@gmail.com

( ୧୦ )

ଜହ୍ନମାମୁଁ ମୋର ବଡ଼ ଉଝୁଟ,
ଡର୍ଥ ସ ରାତିରେ କେଉଁ ଗାଇଜରେ
ଲୁଚି ଅନ୍ଧାରଇ ପୃଥିବୀ ପଟ ।

( ୧୧ )

ଜହ୍ନମାମୁଁ ମୋର ହୋଇ ପୂରୁଣା,
ଦ୍ନଥ ରାତିରେ ପୂର୍ଣ୍ଣ ଅବସ୍ଥାରେ
ବାଞ୍ଛଇ କର୍ପୂରଗୁଣ୍ଡି ଜ୍ୟୋଛନା ।



Digitized by srujanika@gmail.com

# ପକ୍ଷୀର କଳ୍ପନା

( ଅନୂଦିତ )



ଡିମ୍ବଟି ଭିତରେ ଥିଲି ଯେତେବେଳେ
ମୁଦା ପଡ଼ି ଏକବାରେ
ଭାବିଥିଲି ଟେଙ୍ଗୁନ୍ ଗୋଠାଳ ଗୋଟିଏ
ବୋଲି ଏ ସାରା ସଂସାରେ ।

ଯେଉଁ ଦିନ ବଳେ ବାହାରି ପଡ଼ିଲି
ଡିମ୍ବଟା ଦେଇ ଫୁଟାଇ
ଭାବିଲି ସୃଷ୍ଟିଟା ଖାଲି କାଠି କୁଟା
ଆଉ କାହିଁ କିଛି ନାହିଁ ।

କୌତୁକେ ବସାରୁ ମୁହଁଟି ବଢ଼ାଇ
ଦେଖି ଏପାଖ ସେପାଖ
ବୁଝିଲି ଖାଲି ସବୁଜ ପତରେ
ଭରିଛି ଜଗତଯାକ ।

ଯେଉଁ ଦିନୁ ଦେଲି ଖଣ୍ଡିଉଡ଼ା, ବୁଲି
ଆକାଶର ଆଖପାଖ,
ସୃଷ୍ଟିଟା କିପରି କାହିଁ ଅଛି ଭରି
ଭାବି, ହୋଇଲି ଅବାକ ।

Digitized by srujanika@gmail.com

ବିଶ୍ୱ କଳିବାକୁ          ଈଶ ପାଇବାକୁ
ଯେବେ ଭାଇ ! ଅଛ ସାଧ,
ତେବେ ଏକାଗ୍ରରେ          କର୍ତ୍ତବ୍ୟ ପଥରେ
ଯାଅ, ଫେଡ଼ ଜ୍ଞାନଗୃହ ।



Digitized by srujanika@gmail.com

# ଗୁଣର ଆଦର



( ୧ )

ଧର ମଧ୍ୟ କଳା ଦେହ
କୁଅ ଝଟାଳଥି କୋଇଲି ଗୁଣରେ
ପାଇଲା ସବୁର ସ୍ନେହ ।

( ୨ )

କଣ୍ଟକକାୟା କେତକୀ,
ରୂପ ସଉରଭେ ପାଏ ସମାଦର
ଦେବତା ଶିରେ ଝୁଟକି ।

( ୩ )

କାଳସର୍ପ ଶିର ମଣି,
ଗୁଣବଳେ ରାଜେ ରାଜେନ୍ଦ୍ର କଣ୍ଠେ
ହୋଇ ଭୂଷଣ ଅଗ୍ରଣୀ ।

( ୪ )

ଶାମୁକୁଁ ସମ୍ଭବ ମୁକ୍ତା,
ଗୁଣବଳେ ସ୍ୱର୍ଣ୍ଣ ରଜତର ଠାରୁ
ଅଧିକ ହୁଏ ଆଦୃତା ।

Digitized by srujanika@gmail.com

( ୫ )

ଜନମି ପଙ୍କିଲ ଜଳୁ
ଫୁଲରାଣୀ ପଦ ପାଇଅଛୁ ପଦ୍ମ
ସ୍ୱଭାବ ସୁଷମା ବଳୁଁ ।

( ୬ )

ମଧୁ ସ୍ୱମାଧୁର୍ଯ୍ୟବଳେ
ମଧୁମକ୍ଷିକାର ଅଇଁଠା ହେଲେହେଁ
ସମାଦୃତ ସବୁସ୍ଥଳେ ।

( ୭ )

କୁଳ ଶୀଳ ରୂପ ଧନ
କିଛୁ ନୋହେ ଭାଇ ଗୁଣ ଅଛି ଯାର
ସେ ଏକା ଜଗତେ ଧନ୍ୟ ।





Digitized by srujanika@gmail.com

# ଯୁବକ ଭାଇ



ଯୁବକ ଭାଇ ରେ ଯୁବକ ଭାଇ ! ଏ
ଯୌବନ ଅମୂଲ୍ୟ ବେଳା,
ଏ ବେଳାରେ ଯେବେ ହେଳା କରୁ ଲବେ
ବୁଡ଼ିଯିବ ସୁଖଭେଳା ।
ଜୀବନ ମାହେନ୍ଦ୍ର— ମୁହୂର୍ତ୍ତ ଏହଟି
ଏ କଥା ନ ଚେତ ଭାଇ !
କର୍ତ୍ତବ୍ୟରେ ତ୍ରୁଟି କଲେ ଝୁରିବୁଟି
ପଡ଼ିବ ଦୁଃଖଧକ୍କା ଖାଇ ।
ସଂଯତଭାବରେ ଯୌବନ ପଥରେ
ନ ହୋଇଲେ ଅଗ୍ରସର,
ଖସି ଯାଇ ପଦ ଦୁଃସହ ପ୍ରମାଦ—
ଭାଗୀ ହୋଇବୁ ମାତର ।
ଅଳସ ବିଳାସ— ଲାଳସରେ ରସି
ସତର୍କ ନ ହେଲେ ଏବେ,
ଚରମ କାଳଟା ହୋଇ ହଟହଟା
ଶାନ୍ତି ନ ଲଭିବୁ କେବେ ।
ଏ ଶୁଭ ସମୟେ ସାଧିବୁ ଉତ୍ସାହେ
ଯାହା ରଖି ସ୍ଥିର ଲକ୍ଷ୍ୟ

Digitized by srujanika@gmail.com

ତା'ର ଫଳଭାଗୀ ଭବିଷ୍ୟ ଜୀବନେ
ହୋଇ ପାରିବୁ ନିଶ୍ଚୟ ।
ସର୍ବଗ୍ରାସୀ କାଳ— କବଳୁ କେବଳ
'କୀର୍ତ୍ତିର୍ଯ୍ୟସ୍ୟ ସ ଜୀବତି',
ଏହି କଥା ହେଜି ଅସତ୍ ପଥ ତେଜି
ହୋଇ ସତ୍ୟଧର୍ମେ ବ୍ରତୀ ।
ଉତ୍ସାହ ପ୍ରାକର୍ମ ସାହସ ଧଇର୍ଯ୍ୟ
ଅଛି ସ୍ୱହୃଦୟେ ଯାହା
ସୁଶକତମତେ କାର୍ଯ୍ୟେ ବାକ୍ୟେ ଚିତ୍ତେ
ଲଗାଇ ସହର ତାହା,
ଏତିକି ବେଳରେ ଆଗେ ଅଣ୍ଟା ଭିଡ଼ି
ଧରମେ କରି ନିର୍ଭର,
ଦେଶ-ଦଶହିତେ ଯା'କିଛି ଜଗତେ
କରି ପାରିବୁ ତ କର ।



Digitized by srujanika@gmail.com

# ପଣ



ଏଥର ମୁହିଁ କରୁଛି ପଣ
କେବେ ନ ହେବି ମନ୍ଦ ରେ,
କହିବି ସରଳ ସତ୍ୟକଥା
ଛାଡ଼ିବି ମିଥ୍ୟା ଛନ୍ଦ ରେ ।
ଗୁରୁଜନଙ୍କ ବଚନ ମାନ
ମାନ୍ୟ ଭକତି କରିବି,
ଶକ୍ତିମତେ ଦୀନ ଦୁଃଖୀ ରଙ୍କୀ—
ଦୁଃଖ ଦୁର୍ଦ୍ଦଶା ହରିବି ।
ପାପକୁ କରି ଘୃଣା, କରିବି
ପୁଣ୍ୟକୁ ପୂର୍ଣ୍ଣ ଆଦର.
ଜୀବରେ ହିଂସା କରିବି ନାହିଁ
କେବେହେଁ ଆଉ ଏଥର ।
ସ୍ନେହ କରିବ ସକଳେ ଯିବ
ମୋହର ଭଉଣୀ ଭାଇ,
ହିଂସା କେ ମୋତେ କରୁ ପଛେ ମୁଁ
କାହାକୁ ହିଂସିବି ନାହିଁ ।
ହେବି ବିନୟୀ ଶାନ୍ତ ସୁଶୀଳ
ସ୍ନେହ ଦୟା ରଖି ହୃଦୟେ,

Digitized by srujanika@gmail.com

ସରଳ ସତ୍ୟ ସଂଯତ କଥା
କହିବ ସବୁ ସମୟେ ।
ସାନଙ୍କୁ କର ସ୍ନେହ ଆଦର
ବଡ଼ଙ୍କୁ ମାନ୍ୟ କରିବ,
ସ୍ନେହ ଆଦର ଭକ୍ତିରେ ସାରା—
ଘର ଗୋଟିକ ଭରିବ ।
ଛାଡ଼ ମନରୁ କପଟ କ୍ରୋଧ
ଲୋଭ ଗର୍ବ ଅହଙ୍କାର,
ସାହସଭରେ କର୍ମପଥରେ
ହେବ ସଦା ଆଗୁଁ ସାର ।
ଅସଲ ମାଲ ଖୋଜିବ, ମାଲ
ଭୁଲିବ ନାହିଁ ନକଲେ,
କରିବ ପାଣ୍ଟି ପରଖି ଖାଣ୍ଟି
ଆପଣା ବୁଦ୍ଧି ଅକଲେ ।
ନିର୍ଭୟ ହୋଇ ସାଧିବ ମୁହିଁ
ମୋର କର୍ତ୍ତବ୍ୟ ନିକର,
ଭୟ କାହାକୁ ଡରିବାହାକୁ
ସାହା ମୋହର ଈଶ୍ୱର ।
ମନର ବଳେ ମନୁ ଯେ କାଳେ
ମନ ମୟଲାକୁ ଛାଡ଼ିବ,
ତେବେ ମନୁଷ୍ୟ ବୋଲାଇ, ବିଶ୍ୱ—
ଦାଣ୍ଡେ ମୁଣ୍ଡ ଟେକି ଚାଲିବ ।



Digitized by srujanika@gmail.com

## ବସନ୍ତ



ଆସ ହେ ଫୁଲ        ମୁକୁଳ-କୁଳ
ଉତ୍ଫୁଲ୍ଲକାରୀ ଋତୁ ବସନ୍ତ !
ଦକ୍ଷିଣ ମାର୍ଗେ        ଆରୋହି ବେଗେ
ମନ୍ଦ ମଳୟ ମରୁତ ରଥ;
ଉଡ଼ାଅ ଫୁଲୁଁ ପରାଗ ଲୁଟି,
ବୁଡ଼ାଅ ଫୁଲସମ୍ଭାରେ ସୃଷ୍ଟି,
ଜୁରନ୍ତୁ ନଭେ        ଜ୍ୟୋତିଷ୍କ ସର୍ବେ
ଜ୍ୟୋତି; ଉଜ୍ଜ୍ୱଳ ଜ୍ୟୋତିଷ୍କପଥ ।
ଶୀକରସିକ୍ତ        ମଳୟ ବାତ
ସୁବାସ ଅର୍ଘ୍ୟ ସୁଆଗେ ଢାଳି,
ଚୂତ ସୁସଜ୍ଜ        କୁସୁମଗୁଚ୍ଛ-
ଭ୍ରମର ଧୀରେ ଧୀରେ ସଞ୍ଚାଳି;
ପଞ୍ଚ ପାଟଳ ପଲ୍ଲବଧ୍ୱଜା
ଉଡ଼ାଇ, ବାଇ ମର୍ମର ବାଜା
ନଗୃଜ ଲେଳେ        ସର ସଲିଳେ
ସର୍ଜି କଲ୍ଲୋଳ-କଳ-ସଙ୍ଗୀତ ।
ଦଳିତ କଳା—        କଜ୍ଜଳବୋଳା
କାନ୍ତ ଉଜ୍ଜ୍ୱଳ କାନ୍ତିରେ ଝଳି,
ନବ ପୁଷ୍ପିତା        ଶ୍ୟାମଳ ଲତା
କୁଞ୍ଜପୁଞ୍ଜରେ ଗୁଞ୍ଜରୁ ଅଳି;

Digitized by srujanika@gmail.com

ପ୍ରମୋଦେ ମଧୁ-ମକ୍ଷିକାବଧୂ
ମଞ୍ଜୁ ଗୁଞ୍ଜନେ ସମ୍ଭାଷୁ ମଧୁ;
ମେଲନ୍ତୁ ଚିତ୍ର ବର୍ଣ୍ଣ ପସରା
ପ୍ରଜାପତିଏ ହୋଇ ପ୍ରମତ୍ତ ।
ପତିବ୍ରୀପନ୍ତ ପର୍ଣ୍ଣ ପଙ୍କତି
ଉଡ଼ାନ୍ତୁ ଉଚ୍ଚେ ଦଅନ୍ତୁ ତାଳି,
ଜଗତ ଜନ ମନ-ମୋହନ
ଲଳିତ ଲୋଲ କାକଳି ତୋଳି;
କୋକିଳ ବାଳା ସୁକଣ୍ଠ ପାଉ,
ପଞ୍ଚମ ତାନେ ସଙ୍ଗୀତ ଗାଉ,
ଗାଉ ହେ ତବ ବିଜୟୋତ୍ସବ
ପ୍ରକୃତି ରାଣୀ ହୋଇ ଉଷତ ।
ଗହନ ଗିରି କନ୍ଦରୁ ପୂରି
ଉଠୁ ହେ ତବ ଜୟ ଗୀତିକା,
ଫିଟୁ ପ୍ରକୃତି ସୁଷମା କାନ୍ତ
ମନୋଜ୍ଞ ମଧୁମୟ ପେଟିକା;
ପିନ୍ଧ ରୁଚିର ବସନ୍ତ-ବାସ
ହସୁ, ହେ ଜଳ ସ୍ଥଳ ଆକାଶ,
ଜାଗୁ ହେ ବିଶ୍ୱେ ବିଶ୍ୱେଶାଦେଶେ
ବିଶ୍ୱନିଗୂଢ଼ ଶକତି-ମନ୍ତ୍ର ।

Digitized by srujanika@gmail.com

# ଗ୍ରୀଷ୍ମ



ପ୍ରଚଣ୍ଡରୂପୀ          ଚଣ୍ଡ ପ୍ରତାପୀ
ନିଦାଘ ରାଜ ହେ,
ଚଣ୍ଡ ଚଣ୍ଡାଂଶୁ          କିରଣ ଜାଲ
ବକ୍ଷେ ବିରାଜ ହେ;
ଦାବାନଳେ ଦହି ଗହନ
ପ୍ରଭାବଳେ ଦୀପି ଭୁବନ,
ଧୂମିତ କର          ଧୂସର ଶିଖା
ଧରିର ସାଜ ହେ ।
ବାଜୁ ତୁମ୍ବର          ପଦ ମର୍ମର
ବାଦ୍ୟ ମର୍ମରେ ହେ,
ରାଜୁ ଭୁମ୍ବର          ପ୍ରଭା ସମ୍ଭାର
ସାରା ସଂସାରେ ହେ;
ତପ୍ତ ପବନେ ତପ୍ତ ଧୂଳି
ଉଠୁ ନଭ ମାର୍ଗେ ଉଚ୍ଛୁଳି,
ବହିପୁ ଢଗ –          ବିହଗେ ମୃଗ-
ତୃଷ୍ଣିକା ବ୍ୟାଜ ହେ ।
ପାଚେ ରସାଳ          ପନସ ତାଳ
ତବ ବିଭବେ ହେ,
ତବ ସକାଶେ          ଲୋକେ ଉଦାସେ
ପୁଷ୍ପ ସୌରଭେ ହେ;

Digitized by srujanika@gmail.com

ତବାଗମେ ହୋଇ ଶତଧା
ଫାଟିଯାଏ ଯାହା ବସୁଧା
ତୁମ୍ଭଙ୍କୁ ଦେଖି ଫେଡ଼ ଦଏ କି
ହୃଦ ସରୋଜ ହେ ?
ତବ ପ୍ରତାପେ ତୀବ୍ର ସନ୍ତାପେ
କ୍ଷୀଣ ଦୁର୍ବଳ ହେ,
ଆକାଶ ଜଳ ସ୍ଥଳ ଭୂତଳ-
ବାସୀ ସକଳ ହେ,
ଶୁଷ୍କ ସର ଝର ସରିତ,
ରୁକ୍ଷ ଧରା ଧୂଳିପୂରିତ,
ତୃଷା ଆରତ ବିକଳ ପାନ୍ଥ
ହାରେ ଧଇର୍ଯ୍ୟ ହେ ।
ଈଶ ଆଦେଶେ ଅନଳ ବେଶେ
ସାଜ ଧରାରେ ହେ,
ଭଗ୍ନ ମାତର ତବ ଅନ୍ତର
ଜଳ ସମ୍ଭାରେ ହେ,
ବିଶ୍ୱନାଥ ବିଶ୍ୱ ନିୟମ
ହୋଇଲେହେଁ କଠୋରତମ
ତହିଁ ନିହିତ ଅଲକ୍ଷ୍ୟ ଶାନ୍ତ
ମହତ ତେଜ ହେ ।



Digitized by srujanika@gmail.com

# ବର୍ଷା



ହେ ନବ ନୀଳ ନୀର-ଶୀକର-ଧର !
ବାୟୁବିମାନେ ବ୍ୟୋମ-ଅଙ୍ଗନେ
ମୋଦେ ବିହାର କର,
ବଜ୍ରବିଜୟୀ ଡିଣ୍ଡିମ ତବ
ବାଜି, ଉଚ୍ଛୁଳୁ ପ୍ରକୃତିଗର୍ଭ,
ସେ ଘୋର ରୋଳ ଭେଦି ଅଚଳ
କମ୍ପାଉ ଚରାଚର ।
ଦିଗୁଁ ଦିଗନ୍ତେ ଛଟକେ ବୁଲି
ନାଚୁ ବିରାମହୀନା ବିଜୁଳୀ,
ବିଞ୍ଚି ମୟୂଖ ଉଜ୍ଜ୍ୱଳିଉଁ ମୁଖ
ଦିଗବଧୂମାନଙ୍କର ।
ଊର୍ଦ୍ଧ୍ୱ-ଅର୍ବ-ପଥ-ଅନମ୍ବରୁ
ଅବିରାମ ଧାରେ ଧାର ଝରୁ,
ଲଳିତ ଲୋଳେ କଳିତ ରୋଳେ
ଧରାରେ ଝର ଝର ।
ପୁଲକରେ ଭରା ହେଉ ପୃଥ୍ୱୀ,
ପୁଲକଭରା ହେଉ ପ୍ରକୃତି,
ପୂରୁ ହେ ନୀର- ସମ୍ପଦେ ସର,
ସରିତ, ସରୋବର ।

Digitized by srujanika@gmail.com

ଗାଆନ୍ତୁ ତବ ଶର ସ୍ତାବକ
ଭେକ ଡାହୁକ ଗୃତକ କଙ୍କ
ତନ୍ମୟେ ତବ                ଜମ୍ବୁ ବିଭବ
ଗୀତି ଥରକୁ ଥର ।



Digitized by srujanika@gmail.com

# ଶରତ୍



ରାଜ ଶ୍ରୀମତୀ ସତୀ ଶରତ !
ବିଶ୍ୱର ଦରବାରେ,
ଭରି ଧରଣୀ ଆକାଶ ପୃଥ୍ୱୀ
ଉଜ୍ଜ୍ୱଳ ଜ୍ୟୋତି ଧାରେ;
ନୀଳ ଆକାଶର ସ୍ତିମିତ ତାରା,
ମେଲି ଗୋ ସୌନ୍ଦର୍ଯ୍ୟଦୀପ୍ତ ପସରା,
ଜୂରି ଅଖଣ୍ଡ ଚନ୍ଦ୍ରିକା ଖଣ୍ଡ
ସ୍ନାନ ତୁ ଗୃଣ୍ଡେ ଆ ରେ ?

ବଜାଅ ଧୀରେ କେଦାର ପୁରେ
ଅୟି ଗୋ କ୍ଷେତ୍ରଲକ୍ଷ୍ମି !
ସୁପକ୍ୱ ସ୍ୱଚ୍ଛ ସୁବର୍ଣ୍ଣଗୁଚ୍ଛ
ଶିଂସା ବାଜଣ ଝିକ,
ଉଜ୍ଜ୍ୱଳ ମଞ୍ଜୁ ଗୋ ଶେଫାଳି ବାଳା !
ସଜାଇ ସୌରଭ ଗୌରବ ଡାଲି,
ଗୁଞ୍ଜରେ ଅଳି ପ୍ରେମରେ ଢଳି
କୁସୁମ କୁଞ୍ଜଦ୍ୱାରେ ।
ଝାଙ୍ଗ, ଝଙ୍କର ! ଦିବ୍ୟ ଝଙ୍କାର
କରେ ମୁଦିର ଦର୍ପ,

Digitized by srujanika@gmail.com

ସ୍ନିଗ୍ଧ ଶ୍ୟାମଳ କାନ୍ତି ବିମଳ
କାନ୍ତି ଧରାକୁ ଅର୍ପି;
ଝୁଲାଇ ପାଦପ ବଲ୍ଲରୀ ଫୁଲେ,
ଫୁଲାଇ ବୁଲାଇ କଲ୍ଲୋଳକୂଳେ,
ନର୍ତ୍ତକ ଧୀର ଧୀର ସମୀର !
ନାଚ ହେ ତାଳେ ତାଳେ ।
ହେ ଜ୍ୟୋତିଷ୍କ— ବନ୍ଧୁ ଅଗସ୍ତ୍ୟ !
ରାଜ ଜ୍ୟୋତିଷ୍କ ମାର୍ଗେ,
ଯାମୀ କାମିନୀ ମଣ୍ଡଳମଣି-
ଶେଖରି ସଜାଇ ଆଗେ;
ଭାଜି ଯାଉ ତବ ଦୀପ୍ତ ଆଲୋକେ
ଆବିଳ ସଲିଳ ଦର୍ପ ଭୂଲୋକେ,
ମଙ୍ଗଳ ଧରା ହେଉ ହେ ହରା
ସୁଗମ ପଥ ଦ୍ୱାରେ ।
ବାଜୁ ଆନନ୍ଦେ ଲଳିତ ଛନ୍ଦେ
ବିଶ୍ୱର ପ୍ରାଣେ ପ୍ରାଣେ.
ଶରତ କାର୍ତ୍ତି ଶରଦ୍ୱିଭୂତି-
ସଙ୍ଗୀତ ତାନମାନେ;
ବିଶ୍ୱବନ୍ଧୁଙ୍କର ବିଶ୍ୱ କୌତୁକ
ବିଲୋକନ୍ତୁ ବିଶ୍ୱ ହୋଇ ଉତ୍ସୁକ.
ରାଜୁ ହେ ବିଶ୍ୱ ପ୍ରେମ ଆଦର୍ଶ
ବିଶ୍ୱ ମାନବଠାରେ ।



Digitized by srujanika@gmail.com

## ହେମନ୍ତ

ହିମାଙ୍ଗଧର ହିମ-ନାଗର
ଆସ ଭୂତଳେ,
ସ୍ୱଚ୍ଛ ନୀହାର ମୌକ୍ତିକ ହାର
ଲମ୍ବାଇ ଗଳେ;
ହାନୁ ହାନୁ ଖର କର ପ୍ରତାପ,
ହାନୁ ଦେହ-ଦେହ-ଦାହ ସନ୍ତାପ,
ମଜ୍ଜୁ ବସୁଧା ଶୈତଲ୍ୟ ସୁଧା-
ଧାରେ ବହଳେ ।
ଶୁଭ୍ର ଶରତ— ଶିଷ୍ଟ ଜଗତ
ମୁଗ୍ଧ ଏଥର,
ହେଉ ହେ ଶୁଭ୍ର ଶରତ ଅଭ୍ର
ପାଣ୍ଡୁ ଛତର,
ଠେକାଇ ସେ ଛନ୍ନ ଅମ୍ବର ପଥେ,
ଢାଙ୍କି ଜ୍ୟୋତିଷ୍କର ଜ୍ୟୋତି ଈଷିତେ,
ରାଜୁ ହେମନ୍ତ ! ତବ ରାଜତ୍ୱ
ମହୀମଣ୍ଡଳେ ।
ଆସି ଅଭୂତେ ଧ୍ୱଂସ କଣୀଥେ
କାନନ ଚରେ !
ପକ୍ୱ କେଦାର ଶସ୍ୟଭଣ୍ଡାର
ପ୍ରମୋଦଭରେ;

Digitized by srujanika@gmail.com

ମଞ୍ଚାରେ ଅମଞ୍ଚ ଡାକ ଧନୁକ
ଜାଗି ଜାଗରୂକ ରହେ କୃଷକ !
ଜଗ ତୋ ସର୍ବ ଶ୍ରମସୁଲଭ
ସାର ସମ୍ବଳେ ।
ମଲ୍ଲିକା କାନ୍ତ ସାରସପନ୍ତ
କଲ୍ଲୋଳ ଦୋଳେ,
ଦୋଳ ଆନନ୍ଦେ, ଗାୟନ୍ତୀଛନ୍ଦେ
ମଧୁର ବୋଲେ;
ଭଜନ କର ହେ ହେମନ୍ତ ସ୍ତୁତି
ପୂଜ ଗୋ ହେମନ୍ତ ରାଜେ ପ୍ରକୃତି !
ଅର୍ପି ସୁନ୍ଦର ନୀଳ କହ୍ଲାର
କୁସୁମଦଳେ ।
ପୂଜୁ ଜଗତ ରାଜା ହେମନ୍ତ
ଜୟ ସଙ୍ଗୀତେ,
ସୋମ-ସୁବାସ ସୁମନ ହାସ
ବିକଶି ପ୍ରୀତେ;
ବିଶ୍ୱଶୋଭା ଦରବାର ମଣ୍ଡପେ
ବିଶ୍ୱଧାତ୍ରି ମାତଃ ! ବିରାଜ ଦର୍ପେ,
ବିଭୂମାହାତ୍ମ୍ୟ ମଙ୍ଗଳ ସ୍ତୋତ୍ର
ଗାଇ ଉଛଳେ ।



Digitized by srujanika@gmail.com

## ଶୀତ



ଶୀତଳ କର          ଶୈତାଳଧର
ଶୀତ ହେ ।
ଏଥର ଆସ,          ଥରାଇ ଜାଃସ୍ଥ
ଶୀତ ଆତୁର ତନୁ ହେ ।
ବରଜ ବେଗେ ବଣ୍ଟନମାନେ
ହିମ ଶୀକର ସମୀରସନେ
ଶିଶିର ମୁକୁତା—          ଝୁଲା ଝାଲରନ୍ତି
ଝୁଲାଇ କର ନୃତ୍ୟ ହେ ।
ତବ ଜୈବଧ୍ୱଜ କୁହେଲୀ ଦେଖି
ପ୍ରିୟ ଦରଶନ ଆଶା ଉପେକ୍ଷି,
ସରୋଜ-ବାଳୀଏ          ସରସୀର କୋଳେ
ଲୁଚଲେଣି ହୋଇ ନସ୍ତ ହେ ।
ସର୍ଷପ ସୁମନେ ପ୍ରକୃତବାଳୀ,
ସାଜଇ ସୁବର୍ଣ୍ଣ ବନ୍ଧାଣ ଥାଳୀ
କୁରୁବକପନ୍ତ          ଟେକାଇ ଅଛନ୍ତି
କନକ କୁସୁମ ଛନ୍ଦ ହେ ।
ଧରା ଧାନ୍ୟଭରା ତବ ନମନ୍ତେ
ଧରାଶିରାହରା କେ ବୋଲେ ତତେ ?

Digitized by srujanika@gmail.com

ଦେଇ ପତ୍ର ତାର    କୋଳରେ ସୁନ୍ଦର
ମଳୟୁ ବସନ୍ତ ପୁଷ୍ଟ ହେ ।
ବୃଥା ହେ ଶିଶିର, ନଖିଳବାସୀ
ଏହ୍ୱପର ସିନା କରନ୍ତି ଦୋଷୀ
ନ ବୁଝନ୍ତି ଲେଶ    ଛଦ୍ମ ପରମେଶ
ଅଲକ୍ଷ୍ୟ ନିଗୂଢ଼ ତତ୍ତ୍ୱ ହେ ।



Digitized by srujanika@gmail.com

# କାଦମ୍ବିନୀ



ଚଢ଼ି ବାୟୁ ବାହନେ,
ଚଲ ବ୍ୟୋମ ଅଙ୍ଗନେ,
କହ ଗୋ କାଦମ୍ବିନି !
କାହିଁ କରୁ ଚଢ଼ାଉ ?
ଧରା ସୁଷମା ରାଣୀ
ଆଣିବ ବୋଲି ଟାଣି,
ନିଦାରୁଣ ନିଦାଘ
ରାକ୍ଷସେ ସାଧି ଦାଉ ?
ଦିଙ୍ମଣ୍ଡଳ କମ୍ପାଇ,
ଦିଗନ୍ତ ଝଲସାଇ,
ବିଦ୍ୟୁଲ୍ଲତିକା ଅସି
ଖେଳାଇ ଝଟ ଝଟ,
ଧରାଧର ଫଟାଇ,
ଧରାଗର୍ଭ ଫୁଟାଇ,
ଜୀମୂତ ମହାମନ୍ତ୍ର—
ହୁଙ୍କାର ନାଦେ ରଟ ।
ତ୍ରିବର୍ଣ୍ଣ ଜ୍ୟୋତିବର—
ପ୍ରଭାପୂରେ ଭାସ୍ୱର—
ମହେନ୍ଦ୍ର ମହାଚାପ
ଗୁଣ୍ଡେ ଆମଞ୍ଚୁ ଧରୁ,

Digitized by srujanika@gmail.com

ଚଳ, ଚପଳେ, ଖର--
ଧାର ଶର ନକର
ବର୍ଷ ଧାରାଧର
ତୂଣୀର ଭିତରେ ଭର,

କଳା କୁସୁମୀ ଶାଢୀ
ପିନ୍ଧିଛ କା ସଜାଡ଼ି
ସାରା ସଞ୍ଚର ସୃଷ୍ଟି
ଅଭ୍ରପୁଞ୍ଜ ଘୋଡ଼ାଇ,

ମହାବାତ୍ୟା ନିଃଶ୍ୱାସେ
ଅନନ୍ତ ପଥାକାଶେ
ଅନନ୍ତ ଧୂଳିରାଶି
ଘନ ଘନ ଉଡ଼ାଇ ।

ସିନ୍ଧୁ ସରିତ ସର
ଥରାଇ ଥରହର
ତରୁ ବ୍ରତତି ତଳେ
ଡାଳେ ଡାଳେ କମ୍ପୁଛ,

ଘନ ବାହିନୀ ବେଗେ
ଚଳାଇ କି ଆବେଗେ
ଅୟି ଘନ ବରନେ !
କେଣିକି ପଥ ଧାଡ଼ ?

Digitized by srujanika@gmail.com

ତପନ ତୀବ୍ର ତାପେ
ତାପି ହୋଇ ସନ୍ତାପେ
ଥିବ ଗୋ ଉତ୍କଣ୍ଠିତ
ତୋହ୍ର ଆଗମ ଧ୍ୟାୟି,

ଅଳିମାଳିକା ଭ୍ରାନ୍ତ
ଉପୁଜାଇ ତୋ କାନ୍ତ
ଅନମ୍ବର ତୋରଣେ
ଉଦୟ ହେବା ଚାହିଁ ।

ହୋଇ ଅତି ପ୍ରଫୁଲ୍ଲ
ଶିଳୀନ୍ଧ୍ରା ହୀରା ଫୁଲ
ଛଳେ ବିକାଶି ହାସ
ବସୁମତୀ ବଦନ,

ଲମ୍ବାଇ ତୋ ଗଳାରେ
ବକାଳି ପୁଷ୍ପହାରେ,
ଚାତକ ଆର୍ତ୍ତସ୍ୱରେ
କରିବ ଆବାହନ ।

କରିବ ପୁଚ୍ଛ ଟେକି
ନାଚ ଉଠିବେ କେକୀ
ଝଙ୍କାରି ବନଭୂଇଁ
ମଞ୍ଜୁଳ କେକା ସ୍ୱନେ,

Digitized by srujanika@gmail.com

ଇନ୍ଦ୍ର କୋଦଣ୍ଡ ଛଇ
ଝଟକେ ପ୍ରକଟାଇ
ସ୍ୱଚ୍ଛ ଚନ୍ଦ୍ରିକା ଖଣ୍ଡ
ଝରିବେ ଘନଘନେ ।

ହୋଇ ଉତ୍ସୁକ ଚିତ୍ତ
ହରିଦ୍ରା ଜର୍ଜରିତ
ମଣ୍ଡୂକ ଲଲନାଏ
ଦେବେ କେତେ ହୁଳହୁଳି,

ମଣ୍ଡୂକକୁ ଗହଣେ
ବସାଇ ରାଜପଣେ
ମନ ଗରବଭରେ
ଅଳପ ଫୁଲିଫୁଲି ।

ପଡ଼ିବେ କୁଳାଚଳେ
ପ୍ରତିଧ୍ୱନିର ଛଳେ
ମହା ମଙ୍ଗଳାଷ୍ଟକ
ମହାହୁଙ୍କେ ଉଚ୍ଚାରି,

ଦକ୍ଷିଣାଶାୟୀ ନର୍ତ୍ତରେ
ଚମକିବେ ଝର୍ଝରେ
ତୋ ବିଜୟ ଗୌରବ
ଚରାଚରେ ପ୍ରଚାରି ।



Digitized by srujanika@gmail.com

## ମାତୃସ୍ମୃତି



ଯେଉଁ ଆଡ଼େ ଦିଏ ଚାହିଁ,
ଯେତେବେଳେ ଯହିଁ ଥାଇ,
ଦେଖେଁ ସେ ମାତୃମୂରତି ନୟନେ ନିରତେ,

ବଢ଼ାଇ ଦିଓଟି କରେ,
ଆଶ୍ୱାସେ ସେନେହଭରେ,
କୋଳକୁ ନେଲା ପରିଏ ଲାଗଇ ପରତେ ।

ସଂସାର ଜଞ୍ଜାଳତାପେ—
ତାପିତ ହୋଇ ସନ୍ତାପେ,
ଶ୍ରାନ୍ତ କ୍ଲାନ୍ତ ଅବସନ୍ନ ପରାଣ ବିକଳେ,

ଲଭେଁ ଆମ୍ଭ ବିସ୍ମରଣ
ଜାଗି ଉଠଇ ତତ୍କ୍ଷଣ,
ଦେଖି ସେ ମାତୃମୂରତି ଶାନ୍ତ ହୃଦତଳେ ।

ନଇରାଶ୍ୟ ମରୁପଥେ
ଚାଲି ଚାଲି ଅଶକତେ
ଧୋଳ ହୋଇ ପାଦ ଆଉ ନ ଚଳଇ ତାଳେ,

Digitized by srujanika@gmail.com

ହୁଅଇ ଅତି ଅବଶ,
ପୁଣି ବଢ଼ଇ ସାହସ,
ଦେଖି ସେ ମାତୃମୂରତି ଆଶାଚନ୍ଦବାଲେ ।
ବିପଦ ମହାବାତ୍ୟାରେ
ବିଷାଦ ଧୂମାନ୍ଧକାରେ
କାତରେ କଲିଜା ଥରେ ଅତହିଁ ଆକୁଳେ;
ଦଗ୍ଧି ନ ପାଏଁ ଗହା
ପୁଣି ଅସ୍ଥ ହୁଏଁ ଆହା
ଦେଖି ସେ ମାତୃମୂରତି ରମ୍ୟ ପ୍ରାଚୀ ଚୂଳେ ।
ମହାସିନ୍ଧୁ ମହାନନ୍ଦେ
ଗାଇ ଗାୟତ୍ରୀ ଛନ୍ଦେ
ମହାମହିମ ସଙ୍ଗୀତ ନାଚେ ତାଲେ ତାଳେ,
ଊର୍ମି ପରେ ଊର୍ମି ଖେରେ
ଚୋଳି ଅନନ୍ତ ଅମ୍ବରେ,
ଦେଖେଁ ସେ ମାତୃମୂରତି ସୁରୁ ସାତମାଳେ ।
ଖେଳୁଥାଏ ଖେଳରଙ୍ଗେ
ଶଶୀ ପୌର୍ଣ୍ଣମାସୀ ସଙ୍ଗେ
ଫୁଲ୍ଲ ଶଶୀ ଫୁଲ୍ଲ ମନେ ଫୁଲ୍ଲ ତାରାଙ୍ଗନେ,
ଧବ ସାରା ଝଲସାଇ,
ଚନ୍ଦ୍ରିକା ଖଣ୍ଡ ଖସାଇ,
ଦେଖେଁ ସେ ମାତୃମୂରତି ଜ୍ୟୋତ୍ସ୍ନା ଆଚ୍ଛାଦନେ ।

Digitized by srujanika@gmail.com

ପ୍ରକୃତି ଜଡ଼ତା ତୁଟେ,
ଧୀରେ ଧରା ଜାଗି ଉଠେ,
ବାଜେ ମଙ୍ଗଳ ବାଜଣା    ବିଶ୍ୱରାଣୀ ଦ୍ୱାରେ;

ଚର ଅଚର ନିଚୟେ
ଗୀତିଛନ୍ଦା ନିଯବେ ବହେ
ଦେଖେଁ ସେ ମାତୃମରତି    ଶୋଭା ଦରବାରେ ।

ଦୁଃଖେ ଶୋକେ କ୍ଷୋଭେ ଶ୍ଳେଗେ
ଅଯୋଗେ ସୁଯୋଗେ ଭୋଗେ
ସକଳ ବିଧ ଅଭାବେ    ସକଳ ବିଭବେ,

ଶୟନେ ସ୍ୱପ୍ନେ ଜାଗ୍ରତେ
ଦେଖଇଁ ଅନବରତେ
ମୋର ସେ ମାତୃମୂରତି    ଜଳେ ସ୍ଥଳେ ନଭେ ।



Digitized by srujanika@gmail.com

# ସ୍ରୋତେ ସରୋଜ



କିଏ ଭସାଇଲା ତୋତେ          ସରିତର ସ୍ରୋତେ ଗୋ
ସରୋଜ ସୁନ୍ଦର !
କେଉଁ ସରସୀର କୋଳେ          ଲୋଲ ସମୀର ହିଲ୍ଲୋଳେ
ଢଳ ଢଳ ନାଚୁଥିଲୁ          ମୁଦେ ହୃଦଭରି ଗୋ ?

ପ୍ରିୟତମ ଭାନୁକର          ପରଶେ ଫିଟାଇ ଗୋ
ସୌନ୍ଦର୍ଯ୍ୟପସରା,
ବସି ସୁଖେ ବୃନ୍ତାସନେ          ବିକଚଦଳ ଲୋଚନେ
ଏକାନ୍ତେ କାନ୍ତେ ଅନାଇ          ରହିଥିଲୁ ପରା ଗୋ ?

ମନୋହର ସଉରଭେ          ମୋହି ଥିଲା ମନ ଗୋ
କେଡ଼େ ଉତଫୁଲ୍ଲେ !
ପଲ୍ଲବ ଗହଳେ ଥରେ          ଥରେ ଲୁଚି ସୁଆଗରେ
ଖେଳୁଥିଲୁ ଲୁଚକାଳି          ଖେଳ ଥିଲା ଭୁଲେ ଗୋ !

ମୃଣାଳ ଆଶ୍ରୟୁଁ ତୋତେ          କେ ଓଟାଇ ଆଣି ଗୋ
କେଉଁ କାର୍ଯ୍ୟ ଲାଗି ?
ତରଙ୍ଗିଣୀ ସୋତ ରୟେ          ଭସାଇ ଦେଲା ନିର୍ଦ୍ଦୟେ
ତୋର ସେ ସୁଖ ସ୍ୱପନ          ସବୁ ଦେଇ ଭାଙ୍ଗି ଗୋ ?

Digitized by srujanika@gmail.com

ସଲିଲେ ସରୋଜବାଳା, ଯା'ଅ ଧୀରେ ଧୀରେ ଗୋ
ତରଙ୍ଗିଣୀ ଧାରେ
ବୁଡ଼ି, ଭାସି କ୍ଷଣେ କ୍ଷଣେ, ଯେସନ ନୀଳ ଗଗନେ
କଳା କାଦମ୍ବିନୀ କୋଳେ ସରଗର ତାରା ଗୋ ।

କାହିଁ ଭାସି ଭାସି ଯାଅ ଫୁଲ୍ଲ ଫୁଲମୁଖି ଗୋ
ଏଡ଼େ ଅସହାୟେ ?
ତରଙ୍ଗ ତରଙ୍ଗ ପରେ ତରଜି ଗରଜି ଖରେ
ଟାଣି ନେଇଯାଏ ତୋତେ କାଳଦୂତ ପ୍ରାଏ ଗୋ ।

ଭ୍ରମ ଭ୍ରମ ସ୍ରୋତାବେଗେ ଭ୍ରମରମୋହନ ଗୋ !
ହୋଇ ଅନ୍ତହରା,
ଭୁଆଁ ବୁଲି ଅସ୍ତବ୍ୟସ୍ତେ ଭ୍ରମ ସିକତିଳ ପଥେ
ଚନ୍ଦ୍ରଭାଗା ପ୍ରାନ୍ତରର ପଥୁକିନୀ ପରି ଗୋ ।

କୋଟି ଲାବଣ୍ୟନିଧିକି କେ ଦେଲା ଏ ଦଶା ଗୋ ?
ସରୋଜ ଶୋଭାଙ୍ଗି !
ସଂସାର ସରିତେ ମୋତେ କାଳର କରାଳ ସ୍ରୋତେ
ଭସାଇ, କଲା କି ତୋତେ ସମଦଶାଭାଗୀ ଗୋ ?

ତୋହ ପରି ମୁହିଁ ଭ୍ରମ ଭାଗ୍ୟର ଆବର୍ତ୍ତେ ଗୋ
ସରୋଜିନୀ ସହି !
ଉଠି ପଡ଼ି ଭାସି ବୁଡ଼ି ହୋଇ ଛେଚୁଡ଼ା କଚୁଡ଼ା
ଜୀବନ ସ୍ରୋତେ ଜୀବନ ବିକଳେ ଭାସଇ ଗୋ ।

Digitized by srujanika@gmail.com

ତୁହି ଭାସିଯିବୁ ସଖି ଅନନ୍ତ ସାଗରେ ଗୋ।
ମୁହିଁ ଯିବି ଭାସି,
କେହି ନ ଧରିବେ ତୋତେ କେହି ନ ଧରିବେ ମୋତେ
ସେ ଅନନ୍ତ ବିନୁ ଆଉ ନେବାକୁ ଆଶ୍ୱାସି ଗୋ।

ଆସ, ତେବେ ଆସ ଫୁଲରାଣୀ ସରୋଜିନୀ ଗୋ!
ଆସ ମୋର ପାଶେ,
ଦୁହେଁ ମିଶିଯିବା ଏହି କାଳସ୍ରୋତେ ଭାସି ସେହି
ଅନନ୍ତ ପଥର ଯାତ୍ରୀ ଅନନ୍ତ ସକାଶେ ଗୋ।



Digitized by srujanika@gmail.com

# ଏକତାର ବଳ



କ୍ଷୁଦ୍ର କ୍ଷୁଦ୍ର ବୃଷ୍ଟିବିନ୍ଦୁ ହୋଇ ସମ୍ମିଳିତ
ଭସାଏ ଧରଣୀ,
କ୍ଷୁଦ୍ର କ୍ଷୁଦ୍ର ବାଲୁକଣି ସରଳେ ଏକତ୍ର
ସୁଦୃଢ଼ ସରଣୀ ।
କ୍ଷୁଦ୍ର କ୍ଷୁଦ୍ର ଶିଳାଚୂର୍ଣ୍ଣ ସଂହତ ରଚଇ
ପ୍ରକାଣ୍ଡ ଉପଲ,
କ୍ଷୁଦ୍ର କ୍ଷୁଦ୍ର ମେଘମାଳ ମିଳନେ ଢାଙ୍କଇ
ଗଗନ ମଣ୍ଡଳ ।
କ୍ଷୁଦ୍ର କ୍ଷୁଦ୍ର ଶିଳାଖଣ୍ଡ ଏକତାର ବଳେ
ହୁଅଇ ପର୍ବତ,
କ୍ଷୁଦ୍ର କ୍ଷୁଦ୍ର ଅଗ୍ନିକଣା ସଂହତ ସଂଯୋଗେ
ଦହଇ ଜଗତ ।
କ୍ଷୁଦ୍ର କ୍ଷୁଦ୍ର ବିଦ୍ୟୁଦଗ୍ନି- ସ୍ଫୁଲିଙ୍ଗ ଏକତ୍ରେ
କରି ଗରଜନ,
ଗିରିଦର୍ପଚୂର୍ଣ୍ଣକାରୀ ଭୀମ ବଜ୍ରନାଦ
କରେ ସରଜନ ।
ପ୍ରକୃତ ବିଭବପୁଞ୍ଜ ଏକତାର ବଳେ
ମହାବଳବାନ,
ଏକତାର ବଳ ଏକା କରିବାକୁ କ୍ଷମ
କ୍ଷୁଦ୍ରେ ମହୀୟାନ ।



Digitized by srujanika@gmail.com

# କୋଇଲି



କହ ଲୋ କୋଇଲି, କିସ କହୁ କୁହୁ ସ୍ୱରେ ?
ମୁକୁଳିତ ଚୂତ ପରେ ବସି କି ଆବେଗଭରେ
ମଧୁ ସମ୍ଭାଷଣ କରି କାହାକୁ ଡାକୁ ଆଦରେ,
ସୁମଧୁର କଣ୍ଠ ତୋର ଜନ ମନ ହରେ ।

ଆଜଯାଏ ଥିଲୁ କାହିଁ ଲୋ ମଞ୍ଜୁଭାଷିଣି !
କେବଣ ଅଜଣା ରାଜ୍ୟେ ଯାଉଥିଲୁ କିବା କାର୍ଯ୍ୟେ ?
କି ମଧୁର ଭାବରସେ କାହା ମନ କିଣି ?
ମଧୁମୟ କୁହୁସ୍ୱନ ଆଣିଲୁ ଲୋ ଜିଣି ।

ଶୀତଳ ପୁଣ୍ୟ ପ୍ରଭାତେ ବାଳାରୁଣକରେ
ସୁଆଗେ ସର୍ବାଙ୍ଗ ରଞ୍ଜି, କାହା ଭକ୍ତିରସେ ମଜ୍ଜି
ଗାଉଥାଉ ସ୍ତବମାଳା ତୁହି ଭକ୍ତିଭରେ ।
କୁହୁକୁହୁ କୁହୁ ସ୍ୱନେ ରାବ କି ସୁନ୍ଦରେ ।

ମନୋହର ବସନ୍ତର ବାସର ଯୌବନେ
ତରଳ ତରଙ୍ଗ ସଙ୍ଗେ ମିଶାଇ ଲଳିତ ରଙ୍ଗେ
କି ସଙ୍ଗୀତ ଗାଉ ତୁହି ତଟିନୀ ତଟ କାନନେ
ଲୁଚ ଥଲୋ ପିକବଧୂ ! ପର୍ଣ୍ଣ ଆବରଣେ ?

Digitized by srujanika@gmail.com

ଜନ କର୍ଣ୍ଣ ତୋଷିଣି ଲୋ, କାହା ପ୍ରେମ ସ୍ୱର ।
ମଧୁର ପ୍ରଦୋଷ କାଳେ  ଦୋଳ ଦ୍ରୁମାବଳୀ ଡାଳେ
ଲଳିତ ମୋହନ ଗୃରୁ ସୁସ୍ୱର ଲହରୀ
ଢାଳି ଦେଉଥାଉ ଧୀରେ ସୁଧାଧାରା ପରି ?

ବସନ୍ତ କୁମାର କୋଳେ ଧରିବାରୁ ଧରା,
ବିଜନ ରାଇଜୁଁ ଆସି,  ବିମଳ ମଳୟେ ଭାସି,
ଅୟି ବସନ୍ତ ଦୂତିକେ ! ହୋଇ ଆମ୍ଭର
ବସନ୍ତ ବିଜୟବାର୍ତ୍ତା ପରଗୃରୁ ପରା ?

ସୁରୂପ ସୌନ୍ଦର୍ଯ୍ୟହୀନା ଜନମ ଦୁଃଖିନୀ,
କୃରବୀ କାକଦଳେ  ବଢ଼ିଲେହେଁ, ଗୁଣବଳେ
ହୋଇଲୁ ସିନା ଲୋ ତୁହି ଜନ ଆଦରଣୀ,
ବସନ୍ତ ସୁଷମା ଲକ୍ଷ୍ମୀ ଆହ୍ଲାଦଦାୟିନୀ ।



Digitized by srujanika@gmail.com

# ପବନ



ଧନ୍ୟ ରେ ପବନ !           କେ ତୋହ ସମାନ
ହେବ କେଉଁ ଗୁଣବଳେ ?
ତୁହ ସର୍ବ ବ୍ୟାପୀ           ଜୀବ-ଜୀବରୂପୀ
ସାରା ବ୍ରହ୍ମାଣ୍ଡ ମଣ୍ଡଳେ । ଘୋଷା ।
ଅନନ୍ତ ଯୌବନ ନୃତ୍ୟବିଚକ୍ଷଣ,
ଅକ୍ଷୟ-ଅମର ଶୂନ୍ୟ-ଅପଘନ,
ସଜୀବ ଅଜୀବ,           ଅଜୀବ ସଜୀବ
ତୋହର ବିଭୂତିବଳେ ।

ଜଳ ସ୍ଥଳ ବ୍ୟୋମ ଚରାଚର ସାରା—
ବ୍ୟାପି ତୋହ ବୈଦ୍ୟୁତିକ ଶକ୍ତିଧାରା,
ସର୍ବଦା ସର୍ବତ୍ର           ସଞ୍ଚରୁ ମରୁତ !
କେବେ ଧୀରେ, କେବେ ଖରେ ।
ବଳେ ମହାବଳୀ ତୁହି ପ୍ରଭଞ୍ଜନ
ବହି ଭୀମଦର୍ପେ ପୃଷ୍ଠେ ଘନଗଣ
ବିଦ୍ୟୁତେ ହସାଇ,           ବଜ୍ର ଝଲସାଇ,
ବିହରୁ ନଭୋମଣ୍ଡଳେ ।

ଭୀମ ପରାକ୍ରମେ ଭୀଷଣ ହୁଙ୍କାରେ
ଓହ୍ଲାଇ ଯେ କାଳେ ଭମୁ ଏ ଧରାରେ ।

Digitized by srujanika@gmail.com

ଜଳ ସ୍ଥଳ ଗିରି— ଗମ୍ଭୀରନାଦ କରି
କର୍ମି ଉଠେ ଥରହରେ ।
ମଳି ମହାଶାନ୍ତ ଅନନ୍ତ ସାଗରେ,
ଫେନିଳ ତରଙ୍ଗ ତୋଳ ଭୟଙ୍କରେ,
ଶୀକରେ ଧୂମଳ କରି ନଭସ୍ଥଳ
ନାଚୁ ଘୋର ଉଲ୍ଲସ୍ଥଳେ ।
ମେରୁସମ ମହାକାୟ ଦ୍ରୁମାବଳୀ
କୁଠୀର ଅଟ୍ଟାଳି ଅଧ ଦେଇ ଟାଳି,
ସୃଷ୍ଟି ସ୍ଥିରଖାର କରି, ହାହାକାର—
ଧ୍ୱନି ତୋଳୁ ଧରାତଳେ ।
ଜୀବରୂପେ ତୁହି ରହୁ ସର୍ବଦେହେ,
ରବିରୂପେ ପୂରି ଅଛୁ ବିଶ୍ୱଗେହେ,
ହୁଙ୍କାରେ ଓଙ୍କାରେ ଝଙ୍କାରେ ଝଙ୍କାରେ
କଳନାଦେ କଳକଳେ ।

ରସେ ସୁରସିକ ତୁ ଏକା ପବନ !
ଭୁଲାଇ ପରଶେ ଫୁଲବାଲା ମନ,
ଆନନ ମାଧୁରୀ ଚୁମ୍ବୁ ମନଭରି
ଛଦନ କମ୍ପନ ଛଳେ ।
ନାଗରଶେଖର ! ତହୁଁ ଫୁଲଅଳୀ
ତୋ ପରଶ ଲଭି ହୋଇ ମତୁଆଳୀ,
ପରିମଳପୂରି ଜୁରନ୍ତି ପ୍ରଚୁର
ତୋ ଅର୍ଚ୍ଚନେ ପ୍ରେମଭରେ ।

Digitized by srujanika@gmail.com

ସଦା ସମଦର୍ଶୀ ଶୁଦ୍ଧ ସମୀରଣ
ସ୍ନିଗ୍ଧ ଶଶିକର, ଖରାଂଶୁ କିରଣ,
ପ୍ରଚଣ୍ଡ ଅନଳ, ଶୀତଳ ସଲିଳ
ସମାନେ ସେବୁ ସକଳେ ।

ରଙ୍ଗେ ରଙ୍ଗରାଜ କେ ବା ତୋହ ସବୁ ?
ତରୁ ଲତା ଫଳ କୁସୁମ ମଞ୍ଜରୀ
ନଗ୍ନର କି ରଙ୍ଗେ ନଗ୍ନଜ ତରଙ୍ଗେ
ସରତ୍ ସର ସିନ୍ଧୁଜଳେ ?

ଧୂମ ବହ୍ନିଶିଖା ଟେକାଇ ଗଗନେ
ମୁହୂର୍ମୁହୁ ଧାପି ନବାପୁ ତକ୍ଷଣେ,
ଶଳା ଶୈଳଶିଖୁଁ ଖସାଇ ତଳକୁ,
ତୃଣ କ୍ଷେପୁ ନଭସ୍ଥଳେ ।

ବିଶ୍ୱବ୍ୟାପୀ ! ଅଛୁ ତୋହ ଅଙ୍ଗେ ପୂରି
ରୂଦ୍ରରୂପ ସଙ୍ଗେ ମୋହନ ମାଧୁରୀ,
ଧୀମ କାନ୍ତ ଗୁଣ ଗଣେ ବିଚକ୍ଷଣ
ଶୁଦ୍ଧ ତୋ ପ୍ରତିଭାବଳେ ।

ସୃଷ୍ଟି ଆଦ୍ୟକାଳୁ ଯାବତ ବିଷୟ
ତୋଠାରୁ ସମ୍ଭବ ତୋହଠାରେ ଲୟ;
ବିଶ୍ୱରାଜଙ୍କର ଶିର ଅନୁଚର
ତୋ ମହିମା କେ ବା କଳେ ?



Digitized by srujanika@gmail.com

# ଆକାଶ



ହେ ଅନନ୍ତସ୍ୱରୂପୀ ଆକାଶ !
କେ କଳିବ ତୋ ମହିମା     କାହିଁ ତୋହର ଶେଷ ସୀମା
କେଉଁଠାରୁ ହୋଇଛୁ ବା ଆଦ୍ୟ ପରକାଶ
କମ୍ଭୂତ ଆକାର ତୋର କିବା ତୋ ପ୍ରକାଶ ?

ଅନନ୍ତ ବ୍ରହ୍ମାଣ୍ଡ ମାଳ ମାଳ,
ତୋ ବିସ୍ତୃତ ବକ୍ଷେ ନଭ !     ଭାସନ୍ତି କୁସୁମପ୍ରଭ
ଗ୍ରହ ଉପଗ୍ରହ ତାରାକାରେ ଜାଲ ଜାଲ;
ଭାସଇ ଯେସନେ ମହାର୍ଣ୍ଣବେ ପୋତଜାଲ ।

ଏ ଅଖଣ୍ଡ ବ୍ରହ୍ମାଣ୍ଡମଣ୍ଡଳେ,
ଜଳେ ସ୍ଥଳେ ଚରାଚରେ     ଅଧଃ ଊର୍ଦ୍ଧ୍ୱ ପ୍ରଦେଶରେ
ବ୍ୟାପି ରହିଅଛୁ ବ୍ୟୋମ ! ସୂକ୍ଷ୍ମ ସର୍ବ ସ୍ଥଳେ
ତୋ ରୁଦ୍ର ବିରାଟ-ମହାଶୂନ୍ୟ କାୟ ବଳେ ।

କାଳବକ୍ଷେ ତୁ ଚିର ସ୍ଥାପିତ,
ରଜଃ ସତ୍ତ୍ୱ ତମଧର     ବ୍ରହ୍ମା ବିଷ୍ଣୁ ମହେଶ୍ୱର
ପ୍ରତିଷ୍ଠ ତୋ ତହିଁ ବ୍ୟୋମ ! ଏକତ୍ର ଜଡ଼ିତ;
ସୃଷ୍ଟିର ସକଳ ଗାଥା ତୋ ବକ୍ଷେ ଅଙ୍କିତ ।

Digitized by srujanika@gmail.com

ନଗଲମ୍ବେ ମହାଶୂନ୍ୟାସନେ,
ବସି ମହା ଯୋଗଧ୍ୟାନେ ଶାଶ୍ବତ ବିଧି ବିଧାନେ
ସାଧୁ କି ରୁ ସୃଷ୍ଟି ତତ୍ତ୍ୱ ? ତୋହ ଦରଶନେ
ବ୍ରହ୍ମମୟ ବ୍ରହ୍ମଭାବ ଉପୁଜଇ ମନେ ।

ନବନୀଳନୀରଧରଗଣେ,
ଯେକାଳେ ବପୁ ଉଢ଼ାଳ ନଶ୍ୱର ବକ୍ଷେ ବିଜୁଳି,
ଲକ୍ଷ୍ମୀ ନାରାୟଣ ଛବି ବିକାଶଇ ମନେ;
କିବା ପ୍ରଳୟ ପୟୋଧି ସଲିଳ ଶୟନେ ?

ଯେବେ ଶଶୀ ତୋ ଭାଲ ଉଜ୍ଜ୍ୱଳେ,
ଧୀପନ୍ତ ତାରକାପନ୍ତ ଫଣୀହାର ମଣିକାନ୍ତ
ଶଶିଶେଖର ସଦୃଶ ତୋ ସୁଷମା ଝଳେ;
ସୁରଧୁନୀଧାରା ସମ ଚନ୍ଦ୍ରିକା ଉଛୁଳେ ।

ତୋ ଅପୂର୍ବ ମନୋରମ ଛବି,
ତମସମାଚ୍ଛନ୍ନ ରାତ୍ରେ ବିଲୋକୁଁ ବ୍ୟୋମ ସାକ୍ଷାତେ
ଅଗସ୍ତ୍ୟ ଶୋଷିତ ସିନ୍ଧୁ ସଦୃଶ ଦିଶଇ;
ରତ୍ନଦୀପ୍ତଦୀପ୍ତ ତାରାପନ୍ତ ଜଡ଼ି ରହି ।

ଯେବେ ଘୋର ଘନାବୃତେ ରହି,
ଗମ୍ଭୀରେ କରୁ ଆକାଶ ! ବଜ୍ରଘୋଷ ପରକାଶ,
ଭାବୁକ ହୃଦରେ ଏହି ଭାବ ଉପୁଜଇ,
ବ୍ରହ୍ମବାଦୀ ବଦନୁଁ କି ଓଁକାର ସ୍ଫୁରଇ ।

Digitized by srujanika@gmail.com

ତୋ କୋଳେ ରାଜଲେ ରାଜାରାଣୀ,
କମଳ ପରାଗ ପୂଥୁ— ଶୁଭ୍ର ପଦ୍ମ ଶୋଭାକୁ ଭୁ
ଜନ୍ମାଉ ମାନସେ ମାନସର ସ୍ମୃତି ଅଣି,
ବିକଚ କମଳଦଳ ତାରା ବଳ ଠାଣି ।

ରେ ଅନନ୍ତମୂରତି ଗଗନ,
ଅନନ୍ତ ନିଗୂଢ ତତ୍ତ୍ୱ ତୋହରଠାରେ ନିହିତ,
ତୋ ଅନନ୍ତ ଶକ୍ତି ଜ୍ଞାନ ଅନନ୍ତ ଜୀବନ,
କଳିବାକୁ ଭାଜନ କି ମୁହିଁ ଅକିଞ୍ଚନ !




Printed by V. Kar. the U. S. Press, Cuttack.

Digitized by srujanika@gmail.com